Licence No. C.R.N.P. 5—Licensed to post without Pre-payment



ଭୁବନେଶ୍ୱର ବିମାନବନ୍ଦରଠାରେ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ସହିତ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ କେନ୍ଦ୍ର ଭୂତଳ ପରିବହନ ମନ୍ତ୍ରୀ ଶ୍ରୀ ଦେବେନ୍ଦ୍ର ପ୍ରଧାନ । 29/12



ବାରବାଟୀ ଷ୍ଟାଡ଼ିୟମଠାରେ ଅନୁଷ୍ଠିତ ୪୯ତମ ରାଜ୍ୟ ଆମେଚର ଆଥ୍ଲେଟିକ୍ ମିଟ୍‌ରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଭିବାଦନ ଗ୍ରହଣ କରୁଛନ୍ତି । 15/12

PRINTED AT ORISSA GOVERNMENT PRESS, CUTTACK-753010





ବାରବାଟୀ ଷ୍ଟାଡିୟମଠାରେ, ଜାତୀୟ ଦୌଡ଼କୁଦ ପ୍ରତିଯୋଗୀତାରେ ଅଂଶ ଗ୍ରହଣ କରିଥିବା ବିଭିନ୍ନ
ରାଜ୍ୟର ପ୍ରତିଯୋଗୀମାନଙ୍କ ମାର୍ଚ୍ଚପାଷ୍ଟରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ଅଭିବାଦନ ଗ୍ରହଣ କରୁଛନ୍ତି । ୯-୧



ଖୋର୍ଦ୍ଧା ଜିଲ୍ଲା ବେଗୁନିଆ ବ୍ଲକ୍ ଗସ୍ତ ସମୟରେ କେଉଟି ଗ୍ରାମରେ ଗ୍ରାମବାସୀମାନଙ୍କ ସହିତ ସ୍ଥାନୀୟ ସମସ୍ୟା
ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଆଲୋଚନା କରୁଛନ୍ତି । ୭-୧

# ଉତ୍କଳ ପ୍ରସଙ୍ଗ

୫୫ ଭାଗ ୭ମ ସଂଖ୍ୟା ମାଘ-ଫାଲ୍‌ଗୁନ ୧୯୨୦ ଶକାବ୍ଦ ଫେବୃଆରୀ, ୧୯୯୯



ବାର୍ଷିକ ଦେୟ : ଟ୨୦.୦୦

ପ୍ରତି ଖଣ୍ଡ : ଟ୨.୦୦

*ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ ''ଉତ୍କଳ ପ୍ରସଙ୍ଗ''ରେ ପ୍ରକାଶିତ ହୋଇଥାଏ । ''ଉତ୍କଳ ପ୍ରସଙ୍ଗ'' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।*

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ

ଏବଂ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ

(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

# ସୂଚୀ

# କଟକ ନଗର : ଜାତକ କାହାଣୀ

ଡଃ ଯଶୋବନ୍ତ ନାରାୟଣ ଧର

କଟକ ନଗରୀର ଇତିହାସ ସହିତ ବହୁ କାହାଣୀ ଆଉ କିମ୍ବଦନ୍ତୀ ଜଡ଼ିତ । ମାଦଳା ପାଞ୍ଜିର ବିବରଣୀକୁ ଭିତ୍ତି କରି ପରବର୍ତ୍ତୀ କାଳରେ ଐତିହାସିକମାନେ ଏହାର ପ୍ରତିଷ୍ଠା କାଳ ୯୮୯ ଖ୍ରୀଷ୍ଟାବ୍ଦ ବୋଲି ଉଲ୍ଲେଖ କରିଥିଲେ ଏବଂ ଏହି ସମୟ ଚିହ୍ନକୁ ସ୍ୱୀକାର କରି କଟକ ନଗରର ସହସ୍ର ବାର୍ଷିକୀ ଉତ୍ସବ ଏବେ ପାଳିତ ହୋଇ ଯାଇଛି । କିନ୍ତୁ ମାଦଳା ପାଞ୍ଜିକୁ ଇତିହାସ ବୋଲି କହି ହେବ ନାହିଁ । ଯେମିତି କିମ୍ବଦନ୍ତୀ ଓ ଅନ୍ୟାନ୍ୟ କାହାଣୀ ସବୁ ଇତିହାସ ପାଇଁ ତଥ୍ୟ ଓ ଖୋରାକ ଯୋଗାଇ ଥାଏ, ସେହିପରି ମାଦଳା ପାଞ୍ଜିକୁ ଆମେ ଗ୍ରହଣ କରିପାରୁ । ଏଥିରୁ କିଛି ହୁଏତ ସତ୍ୟ ଓ ଆଉ କିଛି ମିଥ୍ୟା ।

ତେବେ ସେ ଯାହାହେଉ, ମାଦଳା ପାଞ୍ଜିର ଏହି ଅନୁମାନ ବିରୁଦ୍ଧରେ କୌଣସି ତଥ୍ୟ ମଧ୍ୟ ମିଳି ନାହିଁ । ଅଧିକନ୍ତୁ ଯାହା କିମ୍ବଦନ୍ତୀ ଭାବରେ ପ୍ରଚଳିତ ତାହା ମଧ୍ୟ ମାଦଳା ପାଞ୍ଜିର ବିବରଣୀକୁ ଜଣାଅଥିବାକେ ସମର୍ଥନ କରିଥାଏ । ଅତଏବ୍, ରାଜା ଓ ପ୍ରଜା ନାମଗୁଡ଼ିକୁ ସତ୍ୟ ବୋଲି ଗ୍ରହଣ କରିନେଲେ ବିଶେଷ କିଛି କ୍ଷତି ନାହିଁ । ମାତ୍ର ସମସ୍ୟାଟି ଉପୁଜେ ସମୟ ଚିହ୍ନକୁ ନେଇ । ଏଣୁ ଆସନ୍ତୁ ଏଇ କଟକ ନାଟକର ସମୟ ରଙ୍ଗମଞ୍ଚ ଓ ତହିଁରେ ଅବତୀର୍ଣ୍ଣ ନାୟକ ନାୟିକା ଓ ଅନ୍ୟାନ୍ୟ ଚରିତ୍ରଗୁଡ଼ିକର ଆଲୋଚନା କରି ସତ୍ୟ ଓ ସିଦ୍ଧାନ୍ତର ନିକଟବର୍ତ୍ତୀ ହେବା ।

ମାଦଳା ପାଞ୍ଜିର ତଥ୍ୟକୁ ଉଦ୍ଧାର କରି ୧୮୨୨ ଖ୍ରୀ:ରେ ଷ୍ଟର୍ଲିଂ ଲେଖିଥିବା ଇଂରାଜୀ ଇତିହାସ ଗ୍ରନ୍ଥରେ ଉଲ୍ଲେଖ କରିଥିଲେ ଯେ, "Raja Nrupa Keshari a maritial and ambitious prince, who was always fighting with his neighbours, is said to have planted a city on site of modern Cuttack about A.D. 989. The reign of Markat Keshari was distinguished for the construction of a stone revetment on embakment (probably the anicient one of which the remains are yet to be seen) to protect the new capital from inundation in A.D. 1006."

ପୁନଶ୍ଚ ସେ ଲେଖିଛନ୍ତି :—

Authorities vary as to the date of foundation of Kataka Biranasi, but there seems good reason to think that it became a capital city as early as the 10th century during the reign of Keshari prince.

ଏହି ବିଷୟକୁ ସମର୍ଥନ ଜଣାଇ ଐତିହାସିକ ନନ୍ଦଲାଲ୍ ଦେ ତାଙ୍କ ଦ୍ୱାରା ପ୍ରସ୍ତୁତ The Geographical Directory of Ancient and Mediavel India ଗ୍ରନ୍ଥର ୨୭ ପୃଷ୍ଠାରେ ଏକ ସ୍ଥାନରେ ଲେଖିଛନ୍ତି :

"Baranasi Kataka — Kataka in Orissa, at the confluence of the Mahanadi and Kathjuri founded in A.D. 989 by Nrupa Keshari X X X."

ମାତ୍ର ପରବର୍ତ୍ତୀ ସମୟରେ ଐତିହାସିକମାନେ ଏହି ନୃପକେଶରୀଙ୍କ ନାମକୁ ଏକ ଐତିହାସିକ ବ୍ୟକ୍ତି ଭାବରେ ସ୍ୱୀକୃତି ଦେଇପାରି ନାହାନ୍ତି । ପ୍ରଥମରେ ମାଦଳା ପାଞ୍ଜି ଯେଉଁ କେଶରୀ ବଂଶର ରାଜତ୍ୱ ସମ୍ପର୍କରେ ଉଲ୍ଲେଖ କରିଛି, ତାହା ଭ୍ରମାତ୍ମକ ବୋଲି ପ୍ରମାଣିତ ହୋଇଛି । ସୋମବଂଶୀ ରାଜାମାନଙ୍କର ସଂଜ୍ଞା କେତେକ କ୍ଷେତ୍ରରେ "କେଶରୀ" ରହିଥିବାରୁ ମାଦଳା ପାଞ୍ଜିକାର ଏ ପ୍ରକାରର ଭ୍ରମ କରିଛନ୍ତି ବୋଲି ମନେହୁଏ । ପୁନଶ୍ଚ ସୋମବଂଶୀ ରାଜାମାନଙ୍କର ନାମୋଲ୍ଲେଖରେ ମିଥ୍ୟାଚାର ଓ ଅତିରଞ୍ଜନର ବ୍ୟାପକତା ମଧ୍ୟ ଲକ୍ଷ୍ୟ କରାଯାଏ । ସୋମବଂଶର "ଜନ୍ମେଜୟ"ଙ୍କୁ ମହାଭାରତର ପରୀକ୍ଷିତଙ୍କ ପୁତ୍ର (କଳିଯୁଗର ପ୍ରଥମ ରାଜା) ବୋଲି କୁହାଯାଇ ହଜାର ହଜାର ବର୍ଷ ଧରି ଶହ ଶହ ସୋମବଂଶୀ ରାଜା ଏଠାରେ ରାଜତ୍ୱ କରିଥିଲେ ବୋଲି ଶ୍ରୁତି ସୁଖକର ମିଥ୍ୟା କାହାଣୀର ପ୍ରଚାର କରାଯାଇଛି । କିନ୍ତୁ ସୋମବଂଶର ବାସ୍ତବ ରାଜାମାନଙ୍କ ନାମରେ "ନୃପକେଶରୀ" ନାମକ କେହି ରାଜା ଥିବାର ପ୍ରମାଣ ଏ ଯାବତ୍ ମିଳିନାହିଁ । ସମ୍ଭବତଃ "ନୃପକେଶରୀ" ନାମଟି ସୋମବଂଶର କେହି ଜଣେ ରାଜା (ବା କେଶରୀ ସଂଜ୍ଞାଧାରୀ କେହି ଜଣେ ନୃପ) ଏପରି ସାଧାରଣ ନାମବାଚକ ସୂଚନା ବୋଲି ଗ୍ରହଣ କରାଯାଇ ପାରେ ।

ଶିଳାଲେଖ ଓ ଅନ୍ୟାନ୍ୟ ପ୍ରାମାଣିକ ସୂତ୍ରରୁ ସୋମବଂଶୀ ରାଜାମାନଙ୍କର ଯେଉଁ ବାସ୍ତବ ନାମ ସମୂହ ମିଳିଥାଏ ସେଗୁଡ଼ିକ ହେଲା :—

(୧) ଶିବଗୁପ୍ତ ୧ମ, (୨) ମହାଭବଗୁପ୍ତ ବା ଜନ୍ମେଜୟ ୧ମ ବା ଧର୍ମ କନ୍ଦର୍ପ ଦେବ ବା ସ୍ୱଭାବତୁଙ୍ଗ, (୩) ମହାଶିବଗୁପ୍ତ ୨ୟ ବା ଯଯାତି ପ୍ରଥମ, (୪) ମହାଭବଗୁପ୍ତ ୨ୟ ବା ଭୀମରଥ ବା ଜନ୍ମେଜୟ ୨ୟ, (୫) ମହାଶିବଗୁପ୍ତ ୩ୟ ବା ଧର୍ମରଥ, (୬) ନଘୁଷ,, (୭) ମହାଶିବଗୁପ୍ତ ୪ର୍ଥ ବା ଚଣ୍ଡୀହର ବା ଯଯାତି ୨ୟ, (୮) ମହାଭବଗୁପ୍ତ ୩ୟ ବା ଉଦ୍ୟୋତ କେଶରୀ, (୯) ଜନ୍ମେଜୟ ୩ୟ ବା ସୋମେଶ୍ୱର ଦେବ, (୧୦) ପୁରଞ୍ଜୟ, (୧୧) ମହାଶିବଗୁପ୍ତ ୫ମ ବା କର୍ଣ୍ଣଦେବ । ଏମାନଙ୍କ ଅତୀତ ସୁବର୍ଣ୍ଣ କେଶରୀ ବା ଶୂନ୍ୟ କେଶରୀ ବୋଲି ଜଣେ ରାଜା ସୋମବଂଶର ଶେଷ ରାଜା ଥିଲେ ବୋଲି ଜଣାଯାଏ । ସୁତରାଂ, ନୃପକେଶରୀ-(କିମ୍ବା- କାଠଯୋଡ଼ି ପଥର ବନ୍ଧର ନିର୍ମାତା ମର୍କତ କେଶରୀ) ପ୍ରଭୃତି ନାମ ସୋମବଂଶର ରାଜାମାନଙ୍କ ନାମ ଭିତରେ ନାହିଁ । ସମ୍ଭବତଃ, ସେମାନେ ରାଜା ବ୍ୟତିରେକ ଅନ୍ୟ କୌଣସି ରାଜ ପୁରୁଷ ହୋଇ ପାରନ୍ତି ।

ନୃପ କେଶରୀ, ମର୍କତ କେଶରୀ, ଘଟକେଶରୀ ଆଦି ଯେଉଁ ସବୁ ନାମ କଟକ ନଗର ପ୍ରତିଷ୍ଠା ସମ୍ପର୍କରେ ମାଦଳା ପାଞ୍ଜିରୁ ମିଳିଥାଏ ସେଗୁଡ଼ିକ ସିଂହାସନାରୂଢ଼ ରାଜାମାନଙ୍କ ନାମ ନୁହେଁ ବୋଲି ବିଶ୍ୱାସ କରିବାର ଅନ୍ୟ ଏକ କାରଣ ରହିଛି, ଯଥା—୯୮୯ ଖ୍ରୀ: ବେଳକୁ ଓଡ଼ିଶାର ଉପକୂଳ ଅଞ୍ଚଳରେ ଭୌମକର ରାଜବଂଶର ଶାସନ ପ୍ରତିଷ୍ଠିତ ଥିବା ଜଣାଯାଏ । ସେତିକିବେଳେ ଓଡ଼ିଶାର ପଶ୍ଚିମ ଓ ମଧ୍ୟ ଭାଗରେ (କୋଶଳ ଅଞ୍ଚଳ) ରାଜତ୍ୱ କରୁଥିଲେ ସୋମବଂଶୀ ରାଜା । ବୌଦ୍ଧ ଧର୍ମର ପୃଷ୍ଠପୋଷକତା କରୁଥିବା ଭୌମକର ରାଜବଂଶ ଓ ଶୈବ ଧର୍ମର ପୃଷ୍ଠପୋଷକତା କରୁଥିବା ସୋମବଂଶ ମଧ୍ୟରେ ସୁଦୃଢ଼ ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିଲା । ଦଶମ ଶତାବ୍ଦୀର ଶେଷ ବେଳକୁ କୋଶଳରେ ରାଜତ୍ୱ କରୁଥିବା ସୋମବଂଶୀ ରାଜା ସ୍ୱଭାବତୁଙ୍ଗ ଜନ୍ମେଜୟଙ୍କର କନ୍ୟା ପୃଥ୍ୱୀ ମହାଦେବୀ ଭୌମରାଣୀ ଭାବରେ ଶାସନ କରୁଥିଲେ । ସେ ନିଜ ପିତାଙ୍କ ସହାୟତାରେ ସ୍ୱାମୀଙ୍କର ମୃତ୍ୟୁ ପରେ ଦୀର୍ଘ କାଳ ଧରି ଶାସନ କରୁଥିବା ବିଭିନ୍ନ ସୂତ୍ରରୁ ଜଣାଯାଏ । ଅତଏବ୍ ତାଙ୍କୁ ଶାସନ କାର୍ଯ୍ୟରେ ସହାୟତା କରୁଥିବା ସୋମବଂଶର କେହି ରାଜପୁରୁଷ କଟକ ନଗର ସ୍ଥାପନା କରିଥିବା ବିଚିତ୍ର ନୁହେଁ । ଯଦିଓ ୯୮୯ ଖ୍ରୀଷ୍ଟାବ୍ଦ ସମୟଟି କେଉଁ ସୂତ୍ରରୁ ପାଇଲେ ତାହା ଜଣାଯାଏ ନାହିଁ, ତେବେ ଏହି ସମୟ ଓ ପୃଥ୍ୱୀ ମହାଦେବୀଙ୍କ ଶାସନ କାଳ ଜଣାଥିଲେ ମେଳ ଖାଇଥାଏ ।

ପୁନଶ୍ଚ, "ଅଭିନବ ବାରଣାସୀ କଟକ" ସ୍ଥାନ ନାମ ବା ନଗର ନାମକରଣ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ସୂଚନା ପ୍ରଦାନ କରୁଛି । ଉତ୍ତର ଭାରତର ବାରଣାସୀ (ବାରୁଣା ଓ ଅସୀ ନାମକ ଦୁଇଟି ନଦୀର ସଙ୍ଗମ ସ୍ଥଳରେ ପ୍ରତିଷ୍ଠିତ ନଗର ନାମ) ଏକ ପ୍ରସିଦ୍ଧ ଶୈବ କ୍ଷେତ୍ର ଥିଲା । ଏଠାରେ କାଶୀ ମଧ୍ୟ ପ୍ରତିଷ୍ଠିତ ଏବଂ କାଶୀରେ ପ୍ରତିଷ୍ଠିତ ଥିଲେ କାଶୀ—ବିଶ୍ୱନାଥ । ଶୈବ ଧର୍ମକୁ ନିସ୍ତବ୍ଧ କରିଦେଇ ଭାରତବର୍ଷରେ ବୌଦ୍ଧ ଧର୍ମ ପ୍ରଚାର ଓ ପ୍ରସାର ଲାଭ କରିବା ପରେ ଶୈବ ପୀଠଗୁଡ଼ିକର ମହତ୍ତ୍ୱ ମଧ୍ୟ ହ୍ରାସ ପାଇଥିଲା । ଅତଏବ୍ ଆଦିଶଙ୍କର (୭୮୦ ଖ୍ରୀ:—୮୧୨ ଖ୍ରୀ:)ଙ୍କ ଆବିର୍ଭାବ ଓ ଦିଗ୍‌ବିଜୟ ପରେ ପୁନର୍ବାର ବହୁ ବୌଦ୍ଧ ପୀଠକୁ ଶୈବ କ୍ଷେତ୍ରରେ ରୂପାନ୍ତରିତ କରାଯାଇଥିଲା । ଏହି ସବୁ ନୂତନ ବା ପୁନଃପ୍ରତିଷ୍ଠିତ ଶୈବ ପୀଠଗୁଡ଼ିକୁ "ଅଭିନବ ବାରଣାସୀ" ଭାବରେ କୁହାଯିବାର ଏକ ନୂତନ ଧାରା ମଧ୍ୟ ଆରମ୍ଭ କରାଯାଇଥିଲା । ଏହି ନୂତନ ନାମକରଣ ଓ ଶୈବ ପୀଠ ସ୍ଥାପନର ରୀତି ପ୍ରାୟ ସମସ୍ତ ସ୍ଥାନରେ ଏକ ପ୍ରକାର ଢଙ୍ଗରେ କରାଯାଇଥିବାର ଲକ୍ଷ୍ୟ କରାଯାଏ, ଯଥା—କୌଣସି ଏକ ବୌଦ୍ଧ ପୀଠରେ ଏକ ହଜାର ବା ଏକ ଲକ୍ଷ ଶିବ ଲିଙ୍ଗ ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କରାଯିବାର ସଂକଳ୍ପ କରି ତାହା ପୂରଣ ହେଲେ ସେହି ସ୍ଥାନଟିକୁ ବା ସେହି ସ୍ଥାନଟିରେ "ଅଭିନବ ବାରଣାସୀ" ପ୍ରତିଷ୍ଠିତ ହେଲେ ବୋଲି କୁହାଯାଉଥିଲା । ଓଡ଼ିଶାରେ ଏହିପରି ଅଭିନବ ବାରଣାସୀ ସ୍ଥାପନର କାର୍ଯ୍ୟ ଭୁବନେଶ୍ୱର ଏବଂ ବଂଶଧାରା କୂଳସ୍ଥ (ବର୍ତ୍ତମାନ ରାୟଗଡ଼ା ଜିଲ୍ଲା ପୂର୍ବର କୋରାପୁଟର ଗୁଣପୁର ନିକଟସ୍ଥ) ପଦ୍ମପୁରଠାରେ ତଥା ଆଧୁନିକ ଓଡ଼ିଶା ସୀମାନ୍ତରେ ଅବସ୍ଥିତ ମୁଖଲିଙ୍ଗମ୍‌ରେ ହୋଇଥିବା ଲକ୍ଷ୍ୟ କରାଯାଏ ।

ଏଠାରେ ପୂର୍ବତନ କୋରାପୁଟ ଅଞ୍ଚଳର ପଦ୍ମପୁର କଥା ସୂଚିତ କଲେ ବିଷୟଟି ଅଧିକ ସ୍ପଷ୍ଟ ହେବ ବୋଲି ମନେ ହୁଏ । ଏହିଠାରେ ହିଁ ରହିଛି ସୁପ୍ରସିଦ୍ଧ ଜଗମଣ୍ଡା ପାହାଡ଼ । ଏହି ପାହାଡ଼ରେ ପୂର୍ବ କାଳରେ ବୌଦ୍ଧ ଆଚାର୍ଯ୍ୟ ଧର୍ମକୀର୍ତ୍ତିଙ୍କର ସୁପ୍ରସିଦ୍ଧ ବୌଦ୍ଧ ବିହାର ଅବସ୍ଥିତ ଥିଲା ।

ପରବର୍ତ୍ତୀ ସମୟରେ ଏହି ପାହାଡ଼ର ଶୀର୍ଷ ଦେଶରେ ନୀଳକଣ୍ଠେଶ୍ୱର ଶିବ ଲିଙ୍ଗ ତଥା ପାହାଡ଼ର ପାଦଦେଶରେ (ପୂର୍ବ ଓ ଉତ୍ତର ପୂର୍ବରେ) ବହୁ ଛୋଟ ବଡ଼ ଶୈବ ମନ୍ଦିର ରହିଛି । ଏହାର ଅନତିଦୂର ରାଜ୍ୟ ରାଜପଥ ପାର୍ଶ୍ୱରେ ସୁପ୍ରସିଦ୍ଧ ଦେବୀ ଖିଲାମୁଣ୍ଡା ଠାକୁରାଣୀଙ୍କ ପୀଠ ରହିଛି ଏବଂ ସେହି ନାମରେ ମଧ୍ୟମ ଧରଣର ଉଚ୍ଚତାସମ୍ପନ୍ନ ପାହାଡ଼ଟିଏ ରହିଛି । କଥିତ ଅଛି, ସ୍ୱର୍ଗର ଦେବତା ଓ ଶିଳ୍ପୀମାନେ ଏଠାରେ ଏକା ରାତିକେ "ବାରଣାସୀ" ପ୍ରତିଷ୍ଠା କରିବାର ସଂକଳ୍ପ କରି ଏକ ହଜାର ଶିବ ଲିଙ୍ଗ ପ୍ରତିଷ୍ଠାର ଆୟୋଜନ କରିଥିଲେ । ମାତ୍ର ଖିଲାମୁଣ୍ଡାଠାକୁରାଣୀ ଏହାର ବିରୋଧ କରି ଏକ ହଜାରରୁ ଗୋଟିଏ ଊଣା ଶିବ ଲିଙ୍ଗ ପ୍ରତିଷ୍ଠିତ ହୋଇଥିବା ବେଳେ କୁକୁଡ଼ା ରୂପ ଧରି ଡାକ ଦେବାରୁ ଦେବତା ଓ ଦେବ ଶିଳ୍ପୀମାନେ ରାତି ପାହିଗଲା ବୋଲି ଭାବି ଅନ୍ତର୍ହିତ ହୋଇଯାଇଥିଲେ । କାହାଣୀଟିର ସତ୍ୟତା ନଥାଉ ପଛକେ ଅନ୍ତତଃ ଏଥିରୁ ଏତିକି ଧାରଣା କରିହୁଏ ଯେ ବୌଦ୍ଧ ପୀଠମାନଙ୍କରେ ପରବର୍ତ୍ତୀ କାଳରେ ଶହ ଶହ ଶିବ ଲିଙ୍ଗ ସ୍ଥାପନା କରାଯାଇ ତାହାକୁ ଶୈବ କ୍ଷେତ୍ରରେ ରୂପାନ୍ତରିତ କରିବାର ଏକ ସଚେତନ ପ୍ରୟାସ କରାଯାଇଥିଲା । ଏହି ପ୍ରୟାସର ଅନ୍ୟ ଏକ

ରୂପ ଆମେ ଭୁବନେଶ୍ୱରଠାରେ ମଧ୍ୟ ଦେଖିବାକୁ ପାଇପାରିବା । ଭୁବନେଶ୍ୱରକୁ ଦ୍ୱିତୀୟ କାଶୀ ବା ଦ୍ୱିତୀୟ ବାରଣାସୀ ବୋଲି କୁହାଯାଏ । ଏହା ମଧ୍ୟ ଅତୀତରେ ଏକ ବୌଦ୍ଧ ପୀଠ ଥିଲା । ଏଠାରେ କେତେକ ଶୈବ ମଠକୁ ଏପରି ନିର୍ଦ୍ଦେଶ ଦିଆଯାଇଥିଲା ଯେ ସେମାନଙ୍କର ଗୋଟିଏ ମୁଖ୍ୟ କାର୍ଯ୍ୟ ଥିଲା ପ୍ରତିଦିନ ଗୋଟିଏ ନୂତନ ଶିବ ଲିଙ୍ଗ ପ୍ରତିଷ୍ଠା କରିବା । ଏହି ପ୍ରଚେଷ୍ଟାର ଫଳ ସ୍ୱରୂପ ଭୁବନେଶ୍ୱରର ବହୁ ବୌଦ୍ଧ ସ୍ତୂପକୀ ଏବେ ଶିବ ଲିଙ୍ଗରେ ପରିବର୍ତ୍ତିତ ହୋଇଯାଇଛି । ଏକ ଅଶୋକ ସ୍ତମ୍ଭ ମଧ୍ୟ ଭାସ୍କରେଶ୍ୱର ମନ୍ଦିରରେ ଶିବ ଲିଙ୍ଗ ଭାବରେ ପୂଜିତ ହେଉଥିବାର କେହି କେହି ଐତିହାସିକ ମତ ପ୍ରକାଶ କରିଛନ୍ତି । ପୁନଶ୍ଚ, ବୁଦ୍ଧେଶ୍ୱରୀ, ବୁଦ୍ଧନାଥ, ବୁଦ୍ଧାଲିଙ୍ଗ ଆଦି ନାମରେ ଭୁବନେଶ୍ୱରରେ ପୂଜା ପାଉଥିବା ବହୁ ଶୈବ ଓ ଶାକ୍ତ ପୀଠ ଯେ ବୌଦ୍ଧ ଧର୍ମ ସହିତ ପୂର୍ବେ ସମ୍ପୃକ୍ତ ଥିଲେ, ଏ କଥା ସହଜରେ ବିଶ୍ୱାସ କରି ହୁଏ । ସେହି ପରମ୍ପରାରେ ସମ୍ଭବତଃ କଟକଠାରେ ମଧ୍ୟ ଏକ ଶୈବ କ୍ଷେତ୍ର ପ୍ରତିଷ୍ଠା କରାଯାଇଥିଲା । ମାତ୍ର ତାହା ମୁଖ୍ୟତଃ ଅଭିନବ ବାରଣାସୀ ନହୋଇ ଅଧିକାଂଶରେ "କଟକ" ହୋଇ ରହିଗଲା ।

ଧାର୍ମିକ ଚେତନା ଦୃଷ୍ଟିରୁ "ଅଭିନବ ବାରଣାସୀ କଟକ"ଟି କେବଳ ଶୈବ ପୀଠ ନହୋଇ ବହୁ ଧର୍ମ ଚେତନାର ସଙ୍ଗମ ସ୍ଥଳୀରେ ପରିଣତ ହେବା ସହିତ ରାଜନୈତିକ–ପ୍ରଶାସନିକ କେନ୍ଦ୍ରରେ ପରିଣତ ହୋଇଛି । ମାତ୍ର କାଶୀ ବା ବାରଣାସୀରେ "ବିଶ୍ୱନାଥ"ଙ୍କ ପରି ଏଠାରେ ପ୍ରଥମେ ବୋଧହୁଏ "ବିଶ୍ୱେଶ୍ୱର" ପ୍ରତିଷ୍ଠିତ ହୋଇଥିଲେ ଏବଂ ତାହାହିଁ ବାରଣାସୀ ଓ ଅଭିନବ ବାରଣାସୀ କଟକ ଦୁହିଁଙ୍କୁ ପରସ୍ପର ସହିତ ସମ୍ପୃକ୍ତ କରିଛି ।

ପ୍ରତ୍ନତାତ୍ତ୍ୱିକ ପରମାନନ୍ଦ ଆଚାର୍ଯ୍ୟ ନିଜର "କଟକର ଇତିହାସ" ପ୍ରବନ୍ଧରେ ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ ଗ୍ରନ୍ଥରେ ଲେଖିଛନ୍ତି ଯେ ଦକ୍ଷିଣ ଭାରତୀୟ ଶିଳାଲିପି (ତେଲୁଗୁ ଭାଷା)ରୁ ଅନୁସନ୍ଧାନ କରି ଶକାବ୍ଦ ୯୦୩ର (ଖ୍ରୀ: ୯୯୩)ରେ ପ୍ରଦତ୍ତ ସିରିୟୁ ସୁହୁସୁଲିଙ୍କ ଦାନପତ୍ରରେ ବାରଣାସୀ କଟକର ନାମ ଥିବାର ଉଲ୍ଲେଖ କରିଛନ୍ତି । ଏହା ଶ୍ୱେତଗଙ୍ଗ ଦେବ ମଧ୍ୟ–ଓଡ଼ିଶାରେ ନିଜର ରାଜତ୍ୱ ପ୍ରତିଷ୍ଠା କରିବାର ଦୁଇ ବର୍ଷ ପରର ଦାନପତ୍ର ହେଲେ ହେଁ ଏହି "ବାରଣାସୀ କଟକ" ବଂଶଧାରା କୂଳସ୍ଥ ତତ୍କାଳୀନ ପାରଳାଖେମୁଣ୍ଡି ତାଲୁକର ବାରଣାସୀ କଟକ (ଅର୍ଥାତ୍ ବର୍ତ୍ତମାନର ମୁଖଲିଙ୍ଗମ୍)କୁ ବୁଝାଉଛି ବୋଲି ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ମତପୋଷଣ କରିଛନ୍ତି । ସେ ସମୟରେ ଡ: ସତ୍ୟନାରାୟଣ ରାଜଗୁରୁ ଅନ୍ୟାନ୍ୟ ତିରିଶଟି ଲିପିରେ "ବାରଣାସୀ କଟକ" ନାମୋଲ୍ଲେଖ ଲକ୍ଷ୍ୟ କରିଥିଲେ । ଏ ସମୟରେ ଦକ୍ଷିଣ ଭାରତରେ ବା ପୂର୍ବ–ଦକ୍ଷିଣ ଭାରତରେ ଅବସ୍ଥିତ ଥିବାରୁ ଏ ସମସ୍ତ ପୂର୍ବୋକ୍ତ ଢଙ୍ଗରେ ପ୍ରତିଷ୍ଠିତ "ବାରଣାସୀ" ବୋଲି ମନେ କରାଯିବାର ଯଥେଷ୍ଟ କାରଣ ରହିଛି । ଏହି , ସବୁ ଦାନପତ୍ରଗୁଡ଼ିକର ସମୟ ଖ୍ରୀ: ୧୩୭୮ରୁ ଖ୍ରୀ: ୧୪୬୨ ମଧ୍ୟରେ ବୋଲି ଜଣାଯାଏ ।

ପରବର୍ତ୍ତୀ ସମୟରେ ମାଦଳା ପାଞ୍ଜିରେ "ବାରଣାସୀ" ଓ "ବିରାଣାସୀ" ଉଭୟ ନାମ ଦେଖିବାକୁ ମିଳୁଥିବାରୁ ଏହି "ଅଭିନବ ବାରଣାସୀ କଟକ"ର ଅବଶିଷ୍ଟାଂଶ ଏବେ "ବିଡ଼ାନାସୀ" ରୂପରେ ରହିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯଦିଓ "ବିଡ଼ାନାସୀ" ଅଞ୍ଚଳରେ କୌଣସି ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଅଦ୍ୟାବଧି ଆବିଷ୍କୃତ ହୋଇନାହିଁ, ତଥାପି ସ୍ଥାନ ନାମ ସାମଞ୍ଜସ୍ୟ ଦୃଷ୍ଟିରୁ କଟକର ପ୍ରାଚୀନ ଇତିହାସ ଆଲୋଚନାରେ ଏହାର ଯଥେଷ୍ଟ ଗୁରୁତ୍ୱ ରହିଛି ।

କଟକ ନଗରର ପ୍ରାଚୀନତା ସମ୍ପର୍କରେ "ବିଡ଼ାନାସୀ"ର ପୂର୍ବ ନାମ ପରି "ବିଶ୍ୱେଶ୍ୱର" ଶିବ ଲିଙ୍ଗର ମଧ୍ୟ ଗୁରୁତ୍ୱ ରହିଛି । ଗଙ୍ଗବଂଶ ଶାସନ ପୂର୍ବରୁ କଟକର ପ୍ରାଚୀନତା ପ୍ରମାଣ କରିବା ପାଇଁ ଯାହା ଅନୁସନ୍ଧାନ କରାଯାଏ, ସେଥିରୁ ଅନ୍ତତଃ ଏତିକି ଜଣାଯାଏ ଯେ ଗଙ୍ଗବଂଶର ଶାସନ ପୂର୍ବରୁ ଭାରତରେ ବିଭିନ୍ନ ସ୍ଥାନରେ ଅଭିନବ ବାରଣାସୀ ପ୍ରତିଷ୍ଠାର ଏକ ବ୍ୟାପକ ପ୍ରଚେଷ୍ଟା ହୋଇଥିଲା । ଏହା ଆଦିଶଙ୍କରଙ୍କର ଦିଗ୍‌ବିଜୟ ସମୟ ସହିତ ମେଳ ଖାଉଥିବାରୁ ଏହାର ଐତିହାସିକତା ଯଥେଷ୍ଟ ପରିମାଣ ରହିଛି ବୋଲି କୁହାଯାଇପାରେ । ଅତଏବ୍, ସେହି ଉଦ୍ୟମର ଅଂଶ ବିଶେଷ ସ୍ୱରୂପ ବୌଦ୍ଧ ଧର୍ମର ପୃଷ୍ଠପୋଷକ ଭୌମରାଜ ବଂଶର ରାଣୀ ପୃଥ୍ୱୀ ମହାଦେବୀଙ୍କ ଶାସନ କାଳରେ ତାଙ୍କ ପିତୃକୁଳ ସୋମବଂଶୀ ଜନ୍ମେଜୟଙ୍କର କେହି ସମ୍ପର୍କୀୟ ୯୮୯ ଖ୍ରୀ:ରେ ଶୈବ ଧର୍ମର ପୃଷ୍ଠପୋଷକ ଭାବରେ ମହାନଦୀ–କାଠଯୋଡ଼ି ମଧ୍ୟରେ ଅଭିନବ ବାରଣାସୀ କଟକର ସ୍ଥାପନାର୍ଥେ "ବିଶ୍ୱେଶ୍ୱର" ଶିବ ଲିଙ୍ଗ ସ୍ଥାପନା କରିଥିଲେ । ସେ ହିଁ ମାଦଳା ପାଞ୍ଜିର ନୃପକେଶରୀ ସହଜ ନାମରେ ବର୍ଣ୍ଣିତ ।

ଉଲ୍ଲେଖଯୋଗ୍ୟ ଯେ ସେତେବେଳେ ପିତା ସୋମବଂଶୀ ଜନ୍ମେଜୟଙ୍କ ରାଜଧାନୀ ଚୌଦ୍ୱାରରେ ଥିବାବେଳେ ପୁତ୍ରୀ ଭୌମରାଣୀ ପୃଥ୍ୱୀ ମହାଦେବୀଙ୍କ ରାଜଧାନୀ ଯାଜପୁରଠାରେ ଅବସ୍ଥାପିତ ଥିଲା । ପୃଥ୍ୱୀ ମହାଦେବୀ ପିତା ତଥା ପିତୃକୁଳର ସାହାଯ୍ୟରେ ରାଜତ୍ୱ କରୁଥିବାର କେତେକ ପ୍ରମାଣ ରହିଛି ଏବଂ ପରବର୍ତ୍ତୀ ସମୟରେ ଭୌମ ରାଜ୍ୟ ମଧ୍ୟ ସୋମବଂଶୀ ରାଜ୍ୟର ଅନ୍ତର୍ଗତ ହୋଇଥିବାର ପ୍ରମାଣ ମିଳେ । ଏଥିରୁ ଅନ୍ତତଃ ଏତିକି ସଷ୍ଟ ହୁଏ ଯେ କେହି ରାଜପୁରୁଷ ଯେ କି ସୋମବଂଶୀ ଥିଲେ ସେ ପୃଥ୍ୱୀ ମହାଦେବୀଙ୍କୁ ସାହାଯ୍ୟ କରୁଥିଲେ ଏବଂ ସେ କଟକ ନଗରର ପ୍ରଥମ ଶୁଭ ଶିଳାଖଣ୍ଡ ବିଶ୍ୱେଶ୍ୱର ନାମରେ ପ୍ରତିଷ୍ଠା କରିଥିଲେ ।

ପରବର୍ତ୍ତୀ କିମ୍ବଦନ୍ତୀ ଓ ଅର୍ଦ୍ଧ ପ୍ରମାଣିତ କାହାଣୀ ହେଉଛି ମର୍କତ କେଶରୀ–ବାଲିମୁଣ୍ଡି ଓ କାଠଯୋଡ଼ି ପଥର ବନ୍ଧର ନିର୍ମାଣ ସମ୍ପର୍କୀୟ ଜନଶ୍ରୁତି । ଏହି ବିଷୟକୁ ଆଲୋଚନା କରିବା ପାଇଁ ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । (୧) ପ୍ରଥମଟି ହେଲା ମାଦଳା ପାଞ୍ଜିରେ ମର୍କତ କେଶରୀ, ତାଙ୍କର ପୁତ୍ର ଘଟକେଶରୀ ତଥା ଘଟକେଶରୀଙ୍କ ଶଳା ନବଘନଙ୍କ ନାମ ସହିତ କାଠଯୋଡ଼ି ପଥର ବନ୍ଧ ନିର୍ମାଣ ସମ୍ପର୍କୀୟ ଉକ୍ତି ।

(୨) ଦ୍ୱିତୀୟ ଭାଗରେ ମର୍କଟ କେଶରୀ ବାଇମୁଣ୍ଡି ନାମକ ବୃଦ୍ଧ ତଥା କାଠଯୋଡ଼ି ପଥର ବନ୍ଧର ନିର୍ମାଣ ସମ୍ପର୍କୀୟ କିମ୍ବଦନ୍ତୀ।

ଏହି ଉଭୟ କଥାରେ ମିଳୁଥିବା ବ୍ୟକ୍ତିମାନଙ୍କର କୌଣସି ଐତିହାସିକ ପ୍ରାମାଣିକତା ଏ ପର୍ଯ୍ୟନ୍ତ ମିଳି ନାହିଁ। କେବଳ ଯାହା .କାଠଯୋଡ଼ି ପଥର ବନ୍ଧର ପ୍ରମାଣ ରହିଛି। ମାଦଳା ପାଞ୍ଜିରେ ଲେଖାଅଛି ଯେ ମର୍କଟ କେଶରୀ "ମହାନଦୀ ଭିତରେ ବାରବାଟୀ କିଲା କଲେ" ଏବଂ ତାଙ୍କର ପୁତ୍ର ଘଟକେଶରୀଙ୍କ ଶଳା ନବଘନ ସିଂହ "କଟକ ଦୁଇବାହୀ ମହାନଦୀ ତଡ଼ା ପଥର ବନ୍ଧାଇଲେ। ସେ ଧୋଇ ନଯିବ ବୋଲି ତାହା ରାଜା ଦେଖି ବଡ଼ ତୁଷ୍ଟ ହେଲେ।"

ଏଥିରେ ଉଲ୍ଲିଖିତ "ମର୍କଟ କେଶରୀ" ନାମଟିକୁ ଅନେକ ଐତିହାସିକ ଭ୍ରମାତ୍ମକ ବୋଲି କହିଥାନ୍ତି। କେତେକ ମାଦଳା ପାଞ୍ଜି ପୋଥିରେ ଏହା ମର୍କତ କେଶରୀ ବୋଲି ମଧ୍ୟ ବର୍ଣ୍ଣିତ। ବ୍ୟାକରଣରେ ମର୍କଟ ବୋଲି କୌଣସି ଶବ୍ଦ ନାହିଁ। ଶବ୍ଦଟି ହେଉଛି ମରକତ (ମଣି)। ତେବେ ସେ ଯାହାହେଉ ଏଇ କଥା ଉଲ୍ଲେଖ କରି ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଣିତ କିମ୍ବଦନ୍ତୀ ଓ ଇତିହାସ ଗ୍ରନ୍ଥରେ ଲେଖିଛନ୍ତି, "ଏଣୁ ଉତ୍କଳର କୌଣସି ରାଜା ମର୍କତ ବା ମର୍କଟ ନାମ ବହନ କରିଥିବା କଥା ସମ୍ଭାବନା ଭିତରକୁ ଆସୁ 'ନାହିଁ। ମାଦଳା ପାଞ୍ଜିରେ ଥିବା ଅତି ପୁରାତନ ରାଜାମାନଙ୍କ ନାମମାନ ବହୁ ଭାବରେ ବିକୃତ ହୋଇଛି। ମର୍କତ ବା ମର୍କଟ ନାମ ମଧ୍ୟ ଏହିପରି ଗୋଟିଏ ବିକୃତ ନାମ ବୋଲି ଧରାଗଲେ ଅସଙ୍ଗତ ହେବ ନାହିଁ। ଭୌମ ରାଜାମାନଙ୍କ ତାମ୍ର ଶାସନମାନଙ୍କରୁ ଜଣାଯାଏ ଯେ ସେମାନଙ୍କ ଜଣେ ଆଦିପୁରୁଷଙ୍କ ନାମ ଥିଲା ଉନ୍ମତ୍ତ କେଶରୀ। ଏହି ଉନ୍ମତ୍ତ କେଶରୀ ନାମଟି ଜନଶ୍ରୁତିରେ ଚାଲି ଆସିଥିବା ବେଳେ ମର୍କଟ କେଶରୀରେ ପରିଣତ ହୋଇଥିବା ଅତ୍ୟନ୍ତ ସମ୍ଭବ। (ପୃଃ ୩୫–୩୬, କିମ୍ବଦନ୍ତୀ ଓ ଇତିହାସ)।

ମାତ୍ର ଉନ୍ମତ୍ତ କେଶରୀଙ୍କ ସମୟ ଅଷ୍ଟମ ଶତାବ୍ଦୀ ବୋଲି ଜଣାଯାଏ। ପୁନଶ୍ଚ ଏହି ଅନୁମାନ ଅନ୍ୟ କୌଣସି ସୂତ୍ର ଦ୍ୱାରା ସମର୍ଥିତ ନୁହେଁ। ତେଣୁ ଏହାକୁ ନିତାନ୍ତ ଅସଙ୍ଗତ ବୋଲି ନକହିଲେ ମଧ୍ୟ ପ୍ରତିଷ୍ଠିତ ଧାରଣା ବିରୁଦ୍ଧରେ ଏକ ବିକଳ୍ପ ମତବାଦ ବୋଲି ସ୍ୱୀକାର କରି ହେଉନାହିଁ।

ପୁନଶ୍ଚ ମର୍କତ କେଶରୀଙ୍କ ପୁତ୍ର ନାମ ମାଦଳା ପାଞ୍ଜିରେ "ଘଟକେଶରୀ" ବୋଲି ଯାହା ଲିଖିତ ହୋଇଛି, ତାହାକୁ ମଧ୍ୟ କୌଣସି ଐତିହାସିକ ତଥ୍ୟ ବା ସୂତ୍ରର ସମର୍ଥନ ମିଳିନାହିଁ। ନଦୀ ଘାଟ ଶବ୍ଦକୁ ନେଇ ସହଜରେ "ଘଟକେଶରୀ" ନାମଟିଏ ସୃଷ୍ଟି କରିବା ସମ୍ଭବ। ପୁଣି ପ୍ରାୟ ଏହି ଶୈଳୀରେ ଶହ ଶହ ରାଜାଙ୍କ ନାମ ସୃଷ୍ଟି କରାଯାଇ କେଶରୀ ବଂଶର ରାଜା ବୋଲି ମାଦଳା ପାଞ୍ଜି ଓ ଅନ୍ୟାନ୍ୟ ଅର୍ଦ୍ଧ କାଳ୍ପନିକ ସୂତ୍ରର ରଚୟିତାମାନେ ବର୍ଷ ବର୍ଷ ଧରି ଉପସ୍ଥାପିତ କରି ଆସିଛନ୍ତି। ଏ ସମ୍ପର୍କରେ ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତ ପ୍ରଣିଧାନଯୋଗ୍ୟ। ସେ ଲେଖିଛନ୍ତି (କିମ୍ବଦନ୍ତୀ ଓ ଇତିହାସ, ପୃଃ ୯୦) "ଉଲ୍ଲିଖିତ ପଣ୍ଡିତମାନଙ୍କ ଲେଖା ଆଲୋଚନା କଲେ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ କେଶରୀ ରାଜବଂଶର ସଂଖ୍ୟା କ୍ରମଶଃ ବଢ଼ି ଚାଲିଛି × × ×। ଏହି ସୃଷ୍ଟ ନାମମାନଙ୍କୁ ଯଦି ଐତିହାସିକ ରୂପେ ଗ୍ରହଣ କରାଯାଏ, ତା'ହେଲେ ଓଡ଼ିଶାର ଇତିହାସ ଅବିଦ୍ୟାର ଆକାଶ କୁସୁମ ରୂପେ ପରିଣତ ହେବ। ଏଣୁ "ଘଟକେଶରୀ" ଓ ତାଙ୍କର ଶଳା (ନବଘନ) ଉଭୟଙ୍କୁ କାଳ୍ପନିକ ଚରିତ୍ର ବୋଲି ଗ୍ରହଣ କରିନେବାକୁ ହେଉଛି। ଅପର ପକ୍ଷେ ହୁଏତ ମର୍କତ କେଶରୀ ବା ସୋମବଂଶର କେହି ଜଣେ ରାଜ ପୁରୁଷ ନବଘନ ନାମକ ଜଣେ ବ୍ୟକ୍ତିଙ୍କ ସାହାଯ୍ୟରେ ପଥର ବନ୍ଧର ନିର୍ମାଣ କାର୍ଯ୍ୟ ଆରମ୍ଭ କରିବେ। ଯାହା ବିଶୁ ମହାରଣା, ଧରମା ଆଦି ପ୍ରଖ୍ୟାତ ଶିଳ୍ପୀଙ୍କ ନାମ ପରି କିମ୍ବଦନ୍ତୀରେ ଚଳି ଆସିଥିବ ଯାହାକି ମାଦଳା ପାଞ୍ଜିକାର ଉଲ୍ଲେଖ କରିଛନ୍ତି।

କିନ୍ତୁ ଯେଉଁ ପ୍ରଖ୍ୟାତ କିମ୍ବଦନ୍ତୀଟି କଟକ ନଗରର ସୁରକ୍ଷା ଓ ପଥର ବନ୍ଧ ନିର୍ମାଣ ସମ୍ପର୍କରେ ଓଡ଼ିଶାରେ ପ୍ରଚଳିତ, ସେ ସୁପରିଚିତ କିମ୍ବଦନ୍ତୀରେ ରାଜା ମର୍କତ କେଶରୀଙ୍କ ସହିତ ବୃଦ୍ଧ ବାଇମୁଣ୍ଡିଙ୍କର ସର୍ବସ୍ୱ ତ୍ୟାଗର କାହାଣୀ ପ୍ରଗ୍ରଥିତ ହୋଇଛି। ଏହି ପରୋପକାରୀ ବୃଦ୍ଧ ବାଇମୁଣ୍ଡି ମାଦଳା ପାଞ୍ଜିର ନବଘନ କି? ହୁଏତ ନୁହେଁ! କାରଣ ଏଇ ନବଘନ ରାଜକୁମାରଙ୍କ ଶାଳକ ବୋଲି ଉଲ୍ଲିଖିତ ଥିବାରୁ ସେ ହୁଏତ କେହି ଜଣେ ଯୁବକ ହୋଇ ପାରନ୍ତି! ତେବେ କିଏ ସେଇ ବାଇମୁଣ୍ଡି? ପୁଣି କିଏ ଏଇ ନବଘନ? ଏ ସମ୍ପର୍କରେ ଆଉ ଅଧିକ କିଛି କେବେବି ଆଲୋଚିତ ହୋଇନାହିଁ।

ଏଇ କିମ୍ବଦନ୍ତୀର ନାୟକ "ବାଇମୁଣ୍ଡି" କିଏ, ତାହା ଏଯାବତ୍ ରହସ୍ୟାବୃତ ହୋଇ ରହିଛି। ଯେଉଁ ସବୁ ଅନୁମାନକୁ ନେଇ ବାଇମୁଣ୍ଡିଙ୍କ ଚରିତ୍ର ଚିତ୍ରାଙ୍କନ କରାଯାଏ, ସେଥିରୁ ତାଙ୍କର ଜାତି, ଗୋତ୍ର ବା ବଂଶଲତାର କୌଣସି ଆଭାସ ମିଳେ ନାହିଁ। ଏତିକି ମାତ୍ର କହିହୁଏ ଯେ ସେ ସମ୍ଭବତଃ ଥିଲେ ଜଣେ ସମ୍ପ୍ରଦାୟ ମୁଖ୍ୟ ବା ସାହି ମୁଖିଆ ଏବଂ ଜୀବନ ସାରା ଉପାର୍ଜନ କରିଥିବା ଧନ ସଞ୍ଚୟ କରି କଟକର ମଙ୍ଗଳ ପାଇଁ କାଠଯୋଡ଼ି ପଥର ବନ୍ଧ ନିର୍ମାଣର ପରିକଳ୍ପନା କରିଥିଲେ।

ସ୍ଥାନ ନାମର ଇତିହାସ ପର୍ଯ୍ୟାଲୋଚନା କରିବାବେଳେ ଯାହା ତଥ୍ୟ ମିଳେ ସେଥିରୁ ସୂଚିତ ହୁଏ ଯେ ଏକଦା କଟକର ବ୍ୟାପକ ଅଞ୍ଚଳରେ ଉପଜାତି ସମ୍ପ୍ରଦାୟର ଲୋକେ ରହୁଥିଲେ। ସ୍ଥାନ ନାମ ଅନୁଶୀଳନରୁ ଯୋଗା (ସଉରା ସମ୍ପ୍ରଦାୟର ଭାଷା), କୁରଖ୍ (ଓରାଓଁ ସମ୍ପ୍ରଦାୟର ଭାଷା) ଶବ୍ଦ ମିଳୁଛି (ଯଥା—ଯୋବ୍ରା, ଝାଞ୍ଜିରୀ, ଜାଗିଲି, ସଉରା ଇତ୍ୟାଦି)। ଅତଏବ୍, ସେ କାଳରେ ଏଠାରେ ରହୁଥିବା ଉପଜାତୀୟ ବ୍ୟକ୍ତିମାନଙ୍କର ମୁଖିଆ ବାଇମୁଣ୍ଡି ଥିଲେ ବୋଲି ଅନୁମାନ କରିବା ଅଯଥାର୍ଥ ନୁହେଁ। କେହି କେହି "ମୁଣ୍ଡା" ସମ୍ପ୍ରଦାୟର ବ୍ୟକ୍ତି ବୋଲି ବାଇମୁଣ୍ଡିଙ୍କୁ ଚିହ୍ନିତ କରିଥାନ୍ତି। ମାତ୍ର ବାଇମୁଣ୍ଡି ନାମଟି ମୂଳ ନାମ ଓ ସଂସ୍କାର ସମ୍ମିଶ୍ରଣ ବୋଲି

ମନେକରିବା ଉଚିତ ହେଉ ନାହିଁ । ବୋଧହୁଏ ଏହା ଏକ ଡାକ ନାମ । ଅବଶ୍ୟ ଏହି ଡାକ ନାମକୁ ନେଇ ସେ ଗଳିତ ଦନ୍ତ, କେଶ, ପକ୍ୱ ଶ୍ମଶ୍ରୁ, ଅସ୍ଥିର ମସ୍ତକ କୃପଣ ବୃଦ୍ଧ ବୋଲି ଚିତ୍ରଣ କରାଯାଏ । ଯେ କି ନିଜ ଜୀବନର ସର୍ବସ୍ୱ ଜନତାର କଲ୍ୟାଣ ପାଇଁ ଦାନ କରି ଧରା ବକ୍ଷରୁ ନିଶ୍ଚିହ୍ନ ହୋଇଗଲେ । ଦଧିଚୀଙ୍କଠାରୁ ମହାନ ଏହି ମହାପ୍ରାଙ୍କର କୀର୍ତ୍ତୀ ଅପୌରୁଷେୟ ଭାବରେ କାଳ ବକ୍ଷରେ ତିଷ୍ଠି ରହିଲା ।

ଏହାର ପରବର୍ତ୍ତୀ ସମୟର କାହାଣୀ ପୁଣି ମାଦଳା ପାଞ୍ଜି ପ୍ରଭାବରୁ ମୁକ୍ତ ନୁହେଁ । ପୂର୍ବରୁ କୁହାଯାଇଛି ଯେ ଗଙ୍ଗବଂଶ ଶାସନ ଓଡ଼ିଶାରେ ପ୍ରତିଷ୍ଠିତ ହେବା ପୂର୍ବରୁ ଓଡ଼ିଶାର ଦକ୍ଷିଣାଞ୍ଚଳରେ ତଥା ଦକ୍ଷିଣ ଭାରତର ବିଭିନ୍ନ ସ୍ଥାନରେ ଅଭିନବ ବାରଣାସୀ ପ୍ରତିଷ୍ଠାର ଏକ ପରମ୍ପରା ଜାରି ରହିଥିଲା । ଏଣୁ ଯଦି କୁହାଯାଏ ,ଯେ ଭୌମବଂଶ ବା ସୋମବଂଶ ରାଜତ୍ୱ କାଳରେ ଓଡ଼ିଶାର ମହାନଦୀ–କାଠଯୋଡ଼ି ତ୍ରିକୋଣଭୂମି ଶୀର୍ଷରେ ଏକ ଅଭିନବ ବାରଣାସୀ କଟକର ସ୍ଥାପନା କରାଯାଇଥିଲା, ତେବେ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ପୁଣି ଉଲ୍ଲେଖ କରାଯାଇପାରେ ଯେ ଆଦିଶଙ୍କର ନିଜର ଦିଗ୍‌ବିଜୟ ଆଶ୍ରମ/ମଠ ପ୍ରତିଷ୍ଠା କ୍ଷେତ୍ରରେ ଓଡ଼ିଶାକୁ ଅଗ୍ରାଧିକାର ଦେଇ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଧାମରେ ଭୂ–ଗୋବର୍ଦ୍ଧନ ମଠ ପ୍ରତିଷ୍ଠା କରିଥିଲେ ଏବଂ ଏହି ମଠର ପ୍ରଥମ ଆଚାର୍ଯ୍ୟ ଥିଲେ ତାଙ୍କର ପ୍ରମୁଖ ଶିଷ୍ୟ ଶ୍ରୀଶ୍ରୀପଦ୍ମପାଦାଚାର୍ଯ୍ୟ । ଅତଏବ୍, ଆଦିଶଙ୍କରଙ୍କ ଯିବା କିମ୍ବା ଆସିବା ପଥରେ "ବିଶ୍ୱେଶ୍ୱର" ଲିଙ୍ଗ ସ୍ଥାପନ ଓ ଅଭିନବ ବାରଣାସୀ ସ୍ଥାପନ ସମୟ ଦୃଷ୍ଟିରୁ ଅସମ୍ଭବ ନୁହେଁ । ଖୁବ୍ ସମ୍ଭବ ଏହି ଦିଗ୍‌ବିଜୟର ପ୍ରଭାବରେ ହିଁ ସ୍ଥାପିତ ହୋଇଥିଲା ଆଜିର କଟକ ନଗରୀ ।

ଏହାର କିଛି ବର୍ଷ ପରେ ୧୧୧୨ ଖ୍ରୀ: ବେଳକୁ ଚୋଡ଼ଗଙ୍ଗ ଦେବ ମଧ୍ୟ ଓଡ଼ିଶାରେ ନିଜର ଆଧିପତ୍ୟ ବିସ୍ତାର କରନ୍ତି । କିମ୍ବଦନ୍ତୀ ଅନୁସାରେ ସେ ଚୌଦ୍ୱାରଠାରେ ରାଜଧାନୀ କରି ବସବାସ କରୁଥିବା ସୁବର୍ଣ୍ଣ କେଶରୀ ନାମକ ସୋମବଂଶୀ ରାଜାଙ୍କୁ ପରାସ୍ତ କରିଥିଲେ । ମାଦଳା ପାଞ୍ଜିର ବର୍ଣ୍ଣନାରେ ଏହି ଚୋଡ଼ଗଙ୍ଗଦେବଙ୍କୁ ଜଣେ ରହସ୍ୟମୟ ବ୍ୟକ୍ତି ଭାବରେ ଦେଖିବାକୁ ମିଳେ । ମାତ୍ର ପ୍ରକୃତ ପକ୍ଷେ ଚୋଡ଼ଗଙ୍ଗଦେବ ଥିଲେ ଦେବେନ୍ଦ୍ର ବର୍ମନ୍ ରାଜରାଜ (ପ୍ରଥମ) ଓ ଚୋଳ ରାଜା ରାଜେନ୍ଦ୍ର ଚୋଳଙ୍କ କନ୍ୟା ରାଜେନ୍ଦ୍ର ସୁନ୍ଦରୀଙ୍କ ପୁତ୍ର । ତାଙ୍କର ଅନ୍ୟ ନାମଗୁଡ଼ିକ ମଧ୍ୟରୁ ତ୍ରୈଲୋକ୍ୟ ଗଙ୍ଗ, ବିକ୍ରମ ଗଙ୍ଗେଶ୍ୱର, ବୀର ରାଜେନ୍ଦ୍ର ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଦେବ ଆଦି ପ୍ରସିଦ୍ଧ (ପାଣିଗ୍ରାହୀ, କିମ୍ବଦନ୍ତୀ ଓ ଇତିହାସ, ପୃ: ୬୨–୬୩) । ଗଙ୍ଗ ବଂଶର ଏହି ବୀର ଯୋଦ୍ଧା ଉଭୟ ଚୋଳ ଓ ଗଙ୍ଗ ବଂଶ ସହିତ ନିଜର ରକ୍ତ ସମ୍ପର୍କର ପ୍ରମାଣ ଦେବାକୁ "ଚୋଳଗଙ୍ଗ" ନାମରେ ପରିଚିତ ହୋଇଥିବା ସହଜରେ ଅନୁମାନ କରାଯାଇପାରେ । ମାଦଳା ପାଞ୍ଜିର ବର୍ଣ୍ଣନାରେ ସେ ବାସୁଦେବ ରଥ ବା ବାସୁଦେବ ବାହିନୀପତି ନାମକ ଜଣେ ଅମାତ୍ୟ ସ୍ଥାନୀୟ ସ୍ମୃତି ଶମ୍ଭୁ ଦ୍ୱାରା ନିମନ୍ତ୍ରିତ ହୋଇ ସୋମବଂଶୀ ରାଜା ଶୂନ୍ୟ କେଶରୀ ବା ସିଂହକଣ୍ଠ କେଶରୀଙ୍କୁ ପରାସ୍ତ କରି ଓଡ଼ିଶାର ମଧ୍ୟ ଭାଗରେ ନିଜର ପ୍ରଭୁତ୍ୱ ପ୍ରତିଷ୍ଠା କରିଥିଲେ । ଜନଶ୍ରୁତି ଅନୁସାରେ ସେତେବେଳେ ସୋମବଂଶୀ ରାଜଧାନୀ ଚୌଦ୍ୱାରରେ ଥିଲା, ମାତ୍ର ମାଦଳା ପାଞ୍ଜି ଚୌଦ୍ୱାର ସମେତ ଓଡ଼ିଶାର ସମସ୍ତ ମୁଖ୍ୟ ସହରକୁ ଚୋଡ଼ଗଙ୍ଗଙ୍କ କୃତି ବୋଲି ବର୍ଣ୍ଣନା କରିଛି । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ପ୍ରକାଶିତ ମାଦଳା ପାଞ୍ଜିରେ ଉଲ୍ଲିଖିତ ଅଛି — "ଚୁଡ଼ଙ୍ଗ ଦେବ ଭୋଗ କଲେ ୬୪ ବର୍ଷ । ଏ ରାଜା ପ୍ରଥମେ କଟକ କଲେ । ଦ୍ୱିତୀୟେ ଅମରାବତୀ କଲେ । ତୃତୀୟେ ଚୁରିଦ୍ୱାର କଲେ । ଚତୁର୍ଥେ ବାରଣାସୀ କଟକ କଲେ । ପଞ୍ଚମେ ଅଙ୍ଗ ଦେଶ କଲେ । ଷଷ୍ଠେ କାଶୀ କ୍ଷେତ୍ର କଲେ । ଏ ଗଙ୍ଗାଠାରୁ ଗୋତମୀ ପର୍ଯ୍ୟନ୍ତ ଏକଛତ୍ର କଲେ" । ଏଥିରେ ବର୍ଣ୍ଣିତ ସ୍ଥାନଗୁଡ଼ିକ ହେଲା :—

(୧) କଟକ—ଯାଜପୁର କଟକ

(୨) ଅମରାବତୀ—ଦ୍ୱିତୀୟ ଅମରାବତୀ (ଛତିଆ)

(୩) ଚୁରିଦ୍ୱାର—ଚଉଦ୍ୱାର କଟକ

(୪) ବାରଣାସୀ କଟକ—ଅଭିନବ ବାରଣାସୀ ବା କଟକ

"ଅଙ୍ଗ ଦେଶ"କୁ ସାରଙ୍ଗ ଗଡ଼ ତଥା କାଶୀ କ୍ଷେତ୍ରକୁ "କାଶିଆ ଗଡ଼" ସହିତ ଡ: କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଚିହ୍ନଟ କରିଛନ୍ତି । କାଶୀ କ୍ଷେତ୍ର ଏଠାରେ ଭୁବନେଶ୍ୱରକୁ ମଧ୍ୟ ଇଙ୍ଗିତ କରୁଥିବା ଅସମ୍ଭବ ନୁହେଁ । ତେବେ ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ ଚୋଡ଼ଗଙ୍ଗ ପ୍ରତିଷ୍ଠା କଲେ ବୋଲି କୁହାଯାଉଥିବା ଏ ସମସ୍ତ ଦୁର୍ଗର ଅସ୍ତିତ୍ୱ ଊଣାଅଧିକେ ଗଙ୍ଗ ରାଜତ୍ୱ ପୂର୍ବରୁ ମଧ୍ୟ ଥିଲା । ହୁଏତ ଏହି ସବୁ ସାମରିକ ଓ ପ୍ରଶାସନିକ ଦୁର୍ଗକୁ ଚୋଡ଼ଗଙ୍ଗ ଅଧିକାର କରି ନିଜର ଶାସନକୁ ସୁଦୃଢ଼ କରିଥିଲେ ।

ଏ ସମୟର "ବାରଣାସୀ କଟକ" ସମ୍ଭବତଃ ମହାନଦୀ–କାଠଯୋଡ଼ିର ତ୍ରିକୋଣଭୂମିର ଶୀର୍ଷରେ ଅର୍ଥାତ୍ ବର୍ତ୍ତମାନର ବିଡ଼ାନାସୀ ଅଞ୍ଚଳରେ ପ୍ରତିଷ୍ଠିତ ଥିଲା । ୧୮୨୨ ଖ୍ରୀ:ରେ ଷ୍ଟର୍ଲିଂ ଯେଉଁ ମାଦଳା ପାଞ୍ଜିକୁ ଆଶ୍ରୟ କରି ନିଜର ଇଂରାଜୀ ଇତିହାସ ଲେଖିଥିଲେ, ତହିଁରେ "ବିରାଣାସୀ" ନାମ ମିଳିଥିଲା । "ବିରାଣାସୀ" ବର୍ତ୍ତମାନ ପ୍ରଚଳିତ "ବିଡ଼ାନାସୀ" ନାମର ପୂର୍ବ ନାମ ବୋଲି ସହଜରେ କହି ହେବ । ମାତ୍ର ପରବର୍ତ୍ତୀ କାଳରେ ମିଳୁଥିବା ମାଦଳା ପାଞ୍ଜି ପୋଥିରେ "ବାଣରାସି" (ବାଣରାସୀର ଅର୍ଥ ବହୁ ଶିବ ଲିଙ୍ଗ ମଧ୍ୟ ହୋଇପାରେ) ସ୍ଥାନ ନାମ ରହିଛି । ପରବର୍ତ୍ତୀ କାଳରେ ମୁସଲମାନ ରାଜତ୍ୱ କାଳରେ ବିବରଣୀକାରମାନେ ଏହି "ବାଣରାସି"କୁ "ବେନାରସ" ବୋଲି ମଧ୍ୟ କହିଛନ୍ତି । ଉତ୍ତର ପ୍ରଦେଶର "ବନାରସ" ପରି ଓଡ଼ିଶାରେ ମଧ୍ୟ ଏକ "ବନାରସ" ବର୍ଣ୍ଣନା ମୁସଲମାନ ଐତିହାସିକଙ୍କ ବର୍ଣ୍ଣନାରେ ଦେଖାଯାଏ । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ ସ୍ଥାନୀୟ ଲୋକଙ୍କ ଉଚ୍ଚାରଣରେ "ବାରଣାସୀ" କଟକ ଏକ ପକ୍ଷରେ ବିରାଣାସୀ–ବିଡ଼ାନାସୀ ହୋଇଗଲା ବେଳେ ଅପର ପକ୍ଷେ ଯାବନିକ ଶିକ୍ଷିତ ଉତ୍ତର ଭାରତାଗତ ମୁସଲମାନ ଐତିହାସିକଙ୍କ ବର୍ଣ୍ଣନାରେ ଏହା ବାଣରାସି–ବେନାରସ୍ ରୂପରେ ପରିବର୍ତ୍ତିତ ହୋଇଯାଇଛି ।

ତେଣେ ସେ ଯାହାହେଉ ବର୍ତ୍ତମାନର କଟକଠାରେ ପ୍ରଥମ ଦୁର୍ଗ ସ୍ଥାପନର କାହାଣୀ ମୋଟାମୋଟି ଭାବରେ ଏଇଠି ଶ୍ୱେତଗଙ୍ଗ ଦେବଙ୍କ ଉପସ୍ଥିତି ସହିତ ଶେଷ ହୁଏ । ଏହି ପ୍ରଥମ କଟକର ସାମରିକ ଦୁର୍ଗ କି ପ୍ରକାରର ଓ କେଉଁ ରୂପରେ ବିରାଜିତ ଥିଲା ତାହା ଆଜି ଜାଣିହୁଏ ନାହିଁ । ଇତିହାସର ଅନ୍ଧାରୀ ଗୁମ୍ଫାରେ ଲୁଚି ରହିଥିବା ଏ ସମ୍ପର୍କୀୟ ତଥ୍ୟକୁ କେହି ଉଦ୍ଧାର କରି ନାହାନ୍ତି କି ସେ ଦୁର୍ଗର ଭଗ୍ନାବଶେଷ ବୋଲି କିଛି ମିଳେ ନାହିଁ । ସମ୍ଭବତଃ, ତାହା ଥିଲା ଏକ ମାଟି ଦୁର୍ଗ, ଯାହା କାଳର କରାଳ ସ୍ରୋତରେ ମହାନଦୀର ଜଳରେ ମିଳେଇଗଲା । ମାତ୍ର, ଏହି ଅପ୍ରମାଣିତ କିମ୍ବଦନ୍ତୀ ଓ ଇତିହାସର ଅନୁଦ୍‌ଘାଟିତ ମୂଳଦୁଆ ଉପରେ ଗଙ୍ଗବଂଶର ରାଜତ୍ୱ କାଳରେ ଗଢ଼ି ଉଠେ ଐତିହାସିକ ଦୁର୍ଗ ବାରବାଟୀ ! କିନ୍ତୁ ଦୈବଯୋଗ ଯେ ବାରବାଟୀର ନିର୍ମାଣ କାହାଣୀ ପାଇଁ ପୁଣି ଥରେ ଆମକୁ ନିର୍ଭର କରିବାକୁ ପଡ଼େ ଇତିହାସ ଭାବେ ଅସ୍ୱୀକୃତ ଓ ତଥ୍ୟ ଦୃଷ୍ଟିରୁ ଅପ୍ରମାଣିତ ମାଦଳା ପାଞ୍ଜିର ବର୍ଣ୍ଣନା ଉପରେ ।

ମାଦଳା ପାଞ୍ଜି କହେ : "ଏହି ରାଜା ନଗର ଚୌଦ୍ୱାରରେ କଟକେ ବିଜେ କରିଥାନ୍ତି । ଏମନ୍ତ ଏକ ଦିନରେ ରାଜାଏ ବିଜେ କରି ଆସି ମହାନଦୀ ପାର ହୋଇ ଏ ନଦୀରୁ ଦକ୍ଷିଣ ତୀର ଦେଖିଲେ କୋଦଣ୍ଡା ଦଣ୍ଡପାଟର ବାରବାଟୀ ଗ୍ରାମରେ ବିଶ୍ୱେଶ୍ୱର ଦେବଙ୍କ ନିକଟେ ଶାମଳ ପକ୍ଷୀକି ବଗ ମାଡ଼ି ବସିଛି । ଏହା ଦେଖି ରାଜାଏ ବଡ଼ ଆଶ୍ଚର୍ଯ୍ୟ ପାଇ ଶୁଭ ଯୋଗ ଦିନରେ ଏ ବାରବାଟୀ ଗ୍ରାମରେ ଖୁଣ୍ଟ ଦେଇ ନଅର ତୋଳାଇ କଟକ କରି କଟକ ନାମ ବାରଣାସୀ କଟକ ବୋଲି ନାମ ଦେଇ ନଗର ଚୌଦ୍ୱାର କଟକ ଛାଡ଼ି ଆସି କଟକରେ ରହିଲେ ।"

ଏଠାରେ ଯେଉଁ ରାଜାଙ୍କ କଥା କୁହାଯାଉଛି ସେ ଥିଲେ ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବ । ଏହି ଅନଙ୍ଗଭୀମ ଦେବ ଖ୍ରୀ: ୧୨୧୧ରୁ ଖ୍ରୀ: ୧୨୩୮ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ । ସେ ଚୌଦ୍ୱାରଠାରେ ରାଜଧାନୀ କରି ରହୁଥିବାର ପୂର୍ବୋକ୍ତ ମାଦଳା ପାଞ୍ଜି ଲେଖାରୁ ଜାଣିବାକୁ ମିଳେ । ଯଦିଓ ମାଦଳା ପାଞ୍ଜିର ଦୁଇଟି ପୋଥିରେ ୧ମ ଏବଂ ୩ୟ ମାଦଳା ପାଞ୍ଜିରେ ଏ ସମ୍ପର୍କରେ ଭିନ୍ନ ତଥା ବିଭ୍ରାନ୍ତିକର ବର୍ଣ୍ଣନା ରହିଛି । ପ୍ରଥମ ପାଞ୍ଜିରୁ ଉପରୋକ୍ତ ବର୍ଣ୍ଣନା ଦେଖିବାକୁ ମିଳୁଥିଲା ବେଳେ ପାଞ୍ଜିର ୨ୟ ପୋଥିରେ ଏ ସମ୍ପର୍କରେ (ଅର୍ଥାତ୍ ଚୌଦ୍ୱାର କଥା) କୌଣସି ଉଲ୍ଲେଖ ମିଳେ ନାହିଁ । ସେହିପରି ତୃତୀୟ ପୋଥିରେ ଉଭୟ ଯାଜପୁର ଓ ଚୌଦ୍ୱାର ନାମ ରହିଛି, ଯଥା–ଏ ରାଜ ଯାଜପୁର ନଗର ଚୌଦ୍ୱାର କଟକ ବିଜେ କରିଥାନ୍ତି । ଅବଶ୍ୟ ମାଦଳା ପାଞ୍ଜିକାରଙ୍କର ଏହି ବିଭ୍ରାନ୍ତିର ଏକ କାରଣ ରହିଛି । ଏହା ହେଲା–ଚୌଦ୍ୱାରର "ଯଜନନଗର" ନାମକରଣ । ଅତୀତରେ ଚୌଦ୍ୱାର କଟକ ଯଜନଗର ବା ଯାଜନଗର ନାମରେ ମଧ୍ୟ ନାମିତ ହୋଇଥିବା କେତେକ ଐତିହାସିକଙ୍କର ମତ ।

ମାଦଳା ପାଞ୍ଜିର ଉପରୋକ୍ତ ଉକ୍ତିରୁ ଅନ୍ୟ ଯେଉଁ ତଥ୍ୟ ମିଳେ ତାହା ହେଲା–ଏଠାରେ ପୂର୍ବରୁ ଏକ ଗ୍ରାମ ଥିଲା, ଯାହାର ନାମ ଥିଲା ବାରବାଟୀ । ଆଗରୁ ଆମେ ଆଲୋଚନା କରିଛନ୍ତି ଯେ ବାରଣାସୀ ଦୁର୍ଗ ନାମ ବିରାଣାସୀ–ବିଡ଼ାନାସୀରେ କାଳକ୍ରମେ ପରିବର୍ତ୍ତିତ ହୋଇଯାଇଛି । ମାତ୍ର ବର୍ତ୍ତମାନର ଉକ୍ତିରୁ ଜାଣିବାକୁ ମିଳେ ଯେ ବାରବାଟୀ ଗ୍ରାମରେ ପ୍ରତିଷ୍ଠିତ ହୋଇଥିଲା ବାରଣାସୀ କଟକ । ଯେଉଁଠାରେ କି ପରବର୍ତ୍ତୀ ସମୟରେ ବାରବାଟୀ ଗ୍ରାମଟି ଲୋପ ପାଇଛି । ରହିଛି କେବଳ ବାରଣାସୀ ଦୁର୍ଗ, ତାହି ବାରବାଟୀ ଦୁର୍ଗ ନାମରେ ।

ଏହି ଜନ୍ମ ଜାତକ କୁଣ୍ଡଳୀ କୋଷ୍ଠୀ ନିର୍ଦ୍ଧାରଣର କାହାଣୀ ଭିତରେ ମାଦଳା ପାଞ୍ଜିର ଅର୍ଦ୍ଧ ସତ୍ୟ ବ୍ୟତୀତ ଯେଉଁ ପ୍ରାମାଣିକ ତଥ୍ୟ ପ୍ରମାଣ ମିଳେ ତାହା ହେଲା ଅନଙ୍ଗଭୀମ ଦେବଙ୍କ ୧୨୩୦ ଖ୍ରୀ:/୧୨୩୧ ଖ୍ରୀ:ରେ କଟକରୁ ପ୍ରଦତ୍ତ ତାମ୍ର ଦାନପତ୍ର ଯାହାକି ନଗରୀ ତମ୍ବା ପଟା ନାମରେ ବିଖ୍ୟାତ । ୧୯୪୯ ଖ୍ରୀ:ରେ ଏକ କୂଅ ଭିତରୁ ଆବିଷ୍କୃତ ଏହି ତମ୍ବା ପଟାଗୁଡ଼ିକର ପାଠୋଦ୍ଧାର ସମ୍ପର୍କରେ ପ୍ରତ୍ନତାତ୍ତ୍ୱିକ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଲେଖିଛନ୍ତି – "୧୯୪୯ରେ ଅଗଷ୍ଟ ମାସରେ କଟକ ଜିଲ୍ଲାର ସଦର ସବ୍‌ଡିଭିଜନର ଅନ୍ତର୍ଭୁକ୍ତ ଫୁଲନଖରାଠାରୁ ୫ ମାଇଲ ଉତ୍ତର–ପୂର୍ବ ଦିଗବର୍ତ୍ତୀ ନଗରୀ ଗ୍ରାମରୁ ଗୋଟିଏ ପୁରୁଣା କୂଅ ମଧ୍ୟରୁ ଖଣ୍ଡିଏ ୫ଟି ଫଳକ ବିଶିଷ୍ଟ ତମ୍ବା ପଟା ମିଳିଲା । ସେ ଗ୍ରାମବାସୀମାନେ ଉକ୍ତ ତମ୍ବା ପଟାକୁ ତତ୍‌କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ଡ: ହରେକୃଷ୍ଣ ମହତାବଙ୍କ ନିକଟରେ ଦେଇଗଲେ । ପ୍ରଧାନମନ୍ତ୍ରୀ ମହତାବ ତମ୍ବା ପଟାଟି ପାଇଲା ମାତ୍ରେ ମୋତେ ଡକାଇ ପଠାଇଲେ । ମୁଁ ତାହା ପରିଷ୍କାର କରିବା ପରେ କେତେକ ଅଂଶ ପାଠକରି ତମ୍ବା ପଟାଟି ଅନଙ୍ଗଭୀମ ଦେବଙ୍କ ଦ୍ୱାରା ଖ୍ରୀ: ୧୨୩୦ରେ ବାରଣାସୀ କଟକରୁ କେତେକ ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ହୋଇଥିବାର କଥା ଡକ୍ଟର ମହତାବଙ୍କୁ ଜଣାଇଲି ।"

ଉକ୍ତ ତମ୍ବା ପଟାର ସମସ୍ତ ପାଠ ଏପିଗ୍ରାଫିକା ଇଣ୍ଡିକା ପୁସ୍ତକର ଭାଗ ୨୮ରେ ମୁଦ୍ରିତ ହୋଇଅଛି । ଏହି ତମ୍ବା ପଟାରେ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ୭ଟି ଦାନର ଉଲ୍ଲେଖ ଅଛି । ତନ୍ମଧ୍ୟରୁ ୬ଟି ଦାନ ବାରଣାସୀ କଟକଠାରୁ ଓ ଅନ୍ୟଟି ପୁରୁଷୋତ୍ତମ କ୍ଷେତ୍ରରୁ ପ୍ରଦତ୍ତ ହୋଇଥିଲା । ସମସ୍ତ ଦାନପତ୍ରରେ ଦାନର ସମୟ ସମ୍ବନ୍ଧରେ ଯାହା ଉଲ୍ଲେଖ ଅଛି ତାହା ତଳେ ଉଦ୍ଧୃତ ହେଲା ।

(୧) ଶକାବ୍ଦେ ଚନ୍ଦ୍ରେଶ୍ୱରୁଦ୍ର (୪୪୧୧୫୨) ଗଣିତେ ଚୈତ୍ର ଶୁକ୍ଳ ନବମ୍ୟାଂ ଶୌରିବାରେ ମୀନ ସଂକ୍ରାନ୍ତ୍ୟାଂ (ତା୨୩ ଫେବ୍ରୁଆରୀ ଖ୍ରୀ: ୧୨୩୦) ଅଭିନବ ବାରଣାସୀ କଟକେ ଚିତ୍ରେଶ୍ୱର ବିଶ୍ୱେଶ୍ୱରଯୋର୍ମଧ୍ୟେ ମହାନଦ୍ୟାଂ ସାଇଲୋ ବିଷୟେ "ପୁରଣ ଗ୍ରାମେ" ବ୍ରାହ୍ମଣମାନଙ୍କୁ ଦାନର କଥା ଲେଖା ଅଛି ।

(୨) ପୁନରବ୍ଦାନ୍ତରେ ମହାନଦ୍ୟାଂ ମାଘ କୃଷ୍ଣ ଷଷ୍ଠ୍ୟାଂ ଗୁରୁବାରେ (ତା୨୬ ଡିସେମ୍ବର ଖ୍ରୀ: ୧୨୩୦) ପ୍ରଦତ୍ତ ଦାନର କଥା ଅଛି ।

(୩) ଆଶ୍ୱିନ୍ୟୈବାବୋସ୍ୟାଂ ମହାନଦ୍ୟାଂ ମାର୍ଗଶୀର୍ଷ ପୌର୍ଣ୍ଣମାସ୍ୟାଂ ଗୁରୁବାରେ (ତା୨୧ ନଭେମ୍ବର ଖ୍ରୀ: ୧୨୩୦) ଚନ୍ଦ୍ରୋପରାଗେ ତସ୍ମିନ୍ ପୁରଣ ଗ୍ରାମେ ଦାନର କଥା ଅଛି ।

(୪) "ତଥା ମକର ସଂକ୍ରାନ୍ତ୍ୟାଂ" (ତା୨୬ ଡିସେମ୍ବର ଖ୍ରୀ: ୧୨୩୦) ଦାନର କଥା ଲେଖା ଅଛି ।

(୫) "ତଥା ପୁରୁଷୋତ୍ତମ ଦେବସ୍ୟ ପ୍ରତିଷ୍ଠା ସମସ୍ତେ" ଦାନର କଥା ଲେଖା ଅଛି ।

(୬) "ତଥା ପୁରୁଷୋତ୍ତମ କ୍ଷେତ୍ରେ ଦକ୍ଷିଣତୀର୍ଥ ଗାଙ୍ଗ ତଟେ ବୃର୍ଦ୍ଧଟାମାବାସ୍ୟାଂ ସୂର୍ଯ୍ୟୋପରାଗେ" (ତା୧୪ ମେ ଖ୍ରୀ: ୧୨୩୦) ଦାନର କଥା ଲେଖା ଅଛି ।

"ତଥା ଅଭିନବ ବାରଣାସ୍ୟାଂ ଭାଗବତଃ ପୁରୁଷୋତ୍ତମ ସନ୍ନିଧୌଂ ମକରାମାବାସ୍ୟାସ୍ମାଂ ରବିବାରେ (ତା୫ ଜାନୁଆରୀ ଖ୍ରୀ: ୧୨୩୧) କୁଦସ୍ତା ବିଷୟେ "ବିଳାସପୁର ଗ୍ରାମେ" ଦାନର କଥା ଲେଖା ଅଛି ।

ଏହି ଦାନପତ୍ରଗୁଡ଼ିକରେ ପୁରୀର ପୁରୁଷୋତ୍ତମ ଓ କଟକର ପୁରୁଷୋତ୍ତମ (ଠାକୁରଙ୍କ ପ୍ରତିଷ୍ଠା) କଥା ଲେଖା ଥିବାରୁ ଏହି ଉଭୟ ପୁରୁଷୋତ୍ତମ ଭିନ୍ନ ଭିନ୍ନ ହୋଇଥିବା ନିଶ୍ଚିତ । ଏହି ଦାନପତ୍ରରୁ ପ୍ରମାଣିତ ହୁଏ ଯେ ୧୨୩୦ ଖ୍ରୀ: ବେଳକୁ କଟକରେ ବାରବାଟୀ ଦୁର୍ଗ ପ୍ରତିଷ୍ଠିତ ହୋଇ ସାରିଥିଲା ମାତ୍ର ତାହା ମଧ୍ୟ ପୂର୍ବ ଦୁର୍ଗ ପରି ଅଭିନବ ବାରଣାସୀ ନାମରେ ନାମିତ ହୋଇଥିଲା । ଏହି ତାମ୍ରପତ୍ରରୁ ମହାନଦୀ, ବାରବାଟୀ ଗ୍ରାମ, ପୁରଣ ଗ୍ରାମ, ବିଳାସପୁର ଗ୍ରାମ ଆଦିର ନାମ ବ୍ୟତୀତ ଗ୍ଲେଡ଼ଗଙ୍ଗ ଦେବ ପୁରୀ ମନ୍ଦିର ତୋଳାଇଥିବାର ସୂଚନା ମିଳିଥାଏ, ମାତ୍ର ଗ୍ଲେଡ଼ଗଙ୍ଗ ଦେବ ପୁରୀ ମନ୍ଦିର ନିର୍ମାଣ କରିଥିବା କଥା ଲୋକେ ଭୁଲି ଯାଇ ଅନଙ୍ଗଭୀମଙ୍କୁ ପୁରୀ ମନ୍ଦିର ନିର୍ମାତା ବୋଲି ମନେ ରଖିଥିଲେ । ମାଦଳା ପାଞ୍ଜିରେ ମଧ୍ୟ ଭୁଲ କ୍ରମେ ଅନଙ୍ଗଭୀମ ଦେବଙ୍କୁ ପୁରୀ ବଡ଼ ଦେଉଳର ନିର୍ମାତା ଭାବରେ ବର୍ଣ୍ଣନା କରିଛି । ମାତ୍ର ଐତିହାସିକ ତଥ୍ୟ ପ୍ରମାଣରୁ ସିଦ୍ଧ ହୋଇଛି ଯେ ଗ୍ଲେଡ଼ଗଙ୍ଗ ଦେବ ହିଁ ପୁରୀ ମନ୍ଦିରର ନିର୍ମାତା । ପରବର୍ତ୍ତୀ ଗଙ୍ଗ ରାଜାଅନଙ୍ଗ ଭୀମ ଦେବ କଟକରେ ଏକ ପୁରୁଷୋତ୍ତମ ବିଗ୍ରହ ପ୍ରତିଷ୍ଠା କରିଥିଲେ ଏବଂ ଏଥିପାଇଁ ଏକ ଦେଉଳ ନିର୍ମାଣ କରିଥିଲେ ।

ଡ: ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ଭିନୋଟିପାଙ୍କ ମାଦଳା ପାଞ୍ଜି ପୋଥିରେ ଅନଙ୍ଗଭୀମ ଦେବଙ୍କୁ ପୁରୀ ମନ୍ଦିରର ନିର୍ମାତା ବୋଲି ବର୍ଣ୍ଣନା କରାଯାଇଥିବା ତଥା କଟକରେ ବାସ୍ତବରେ ସେ ତୋଳାଇଥିବା ମନ୍ଦିରର ସତ୍ତା ମିଳୁନଥିବାରୁ ଓଡ଼ିଶାର ଇତିହାସରେ ଏକ ଅସମାହିତ ପ୍ରଶ୍ନର ସୃଷ୍ଟି ହୋଇଥିଲା ।

ଏହି ଅସମାହିତ ପ୍ରଶ୍ନକୁ ଆହୁରି ଜଟିଳ କରିଥିଲା ଫିରୋଜ ସାହାଙ୍କ ଆକ୍ରମଣ ସମ୍ବନ୍ଧରେ ବିବରଣୀ "ତାରିଖ୍-ଇ-ଫିରୋଜସାହୀ" । କାରଣ ଏହି ବିବରଣୀ ଅନୁସାରେ ଫିରୋଜ ସାହ ପୁରୀ ମନ୍ଦିର ଉପରେ ଆକ୍ରମଣ କରିଥିଲେ ମାତ୍ର ବାସ୍ତବରେ ଫିରୋଜ ସାହ କଟକରେ ଥିବା ଶ୍ରୀଜଗନ୍ନାଥ ମନ୍ଦିରକୁ ଭାଙ୍ଗି ଦେଇଥିଲେ । ଏହି "ତାରିଖ୍-ଇ-ଫିରୋଜ ସାହୀ" ଦୁଇଟି ଗ୍ରନ୍ଥ ଦୁଇଜଣ ବିବରଣୀକାରଙ୍କ ଦ୍ୱାରା ଲିଖିତ ହୋଇଥିବାର ଜଣାଯାଏ । ଗୋଟିଏ ଗ୍ରନ୍ଥ ସାମସ୍-ଇ-ସିରାଜ ଲେଖିଥିବା ବେଳେ ଅନ୍ୟଟି "ବରାଉନି" ଦ୍ୱାରା ଲିଖିତ ହୋଇଥିଲା । ତେବେ ଏହି ଗ୍ରନ୍ଥ ଦୁଇଟିରେ ଫିରୋଜ ସାହା ପୁରୀ ମନ୍ଦିର ଆକ୍ରମଣ କରିଥିଲେ ବୋଲି ଭ୍ରମ ଧାରଣା ସୃଷ୍ଟି କରିଛି । ମାତ୍ର, ଫିରୋଜ ସାହା ଓଡ଼ିଶା ଆକ୍ରମଣ କାଳରେ କଟକ ବ୍ୟତୀତ ଆଉ ଅଧିକ ଦୂର ଅଗ୍ରସର ହୋଇନଥିଲେ । ସେ ପ୍ରକୃତ ପକ୍ଷେ ଅନଙ୍ଗଭୀମଙ୍କ ଦ୍ୱାରା ନିର୍ମିତ କଟକଠାରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ମନ୍ଦିର ଯାହାକି ୧୨୩୦ ଖ୍ରୀ:ରେ ପ୍ରତିଷ୍ଠା କରାଯାଇଥିଲା, ଠାରୁ ୧୩୦ ବର୍ଷ ପରେ ୧୩୬୦ ଖ୍ରୀ:ରେ ଧ୍ୱଂସ କରି ଦେଇଥିଲେ ।

ସମ୍ପ୍ରତି କଟକଠାରେ ଦେଉଳ ସାହି ବୋଲି ଏକ ଅଞ୍ଚଳ ରହିଛି । ଏହି ସ୍ଥାନରେ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ଜଗନ୍ନାଥ ଦେଉଳଟି ପ୍ରତିଷ୍ଠିତ ହୋଇଥିଲା ବୋଲି କେହି କେହି ମତ ଦେଇଥାନ୍ତି । ଅନ୍ୟ କେତେକ ମତ ଦିଅନ୍ତି ଯେ ବାରବାଟୀ ଦୁର୍ଗ ପରିସର ମଧ୍ୟରେ ରହିଥିବା ରହସ୍ୟମୟ ମାଟି ଢ଼ୁଦ ତଳେ ଏହି ମନ୍ଦିରର ଭଗ୍ନାବଶେଷ ପୋତି ହୋଇ ରହିଥିଲା । କଟକ ନଗରର ହଜାର ବର୍ଷ ପୂର୍ତ୍ତି ଉପଲକ୍ଷେ କରାଯାଇଥିବା ଭୂ-ଖୋଦନ କାର୍ଯ୍ୟକ୍ରମରୁ ଏକ ମନ୍ଦିରର କିଛି ଅଂଶ ଉଦ୍ଧାର କରାଯାଇଥିବାରୁ ଏ ସମ୍ପର୍କୀୟ ଧାରଣା କ୍ରମେ ଦୃଢ଼ୀଭୂତ ହେବାରେ ଲାଗିଛି ।

ଏହି ସବୁ କୁହେଳିକାଚ୍ଛନ୍ନ ଅତୀତର ଇତିହାସ ଭିତରୁ କଟକ ନଗର ଜନ୍ମ କାହାଣୀ, ନାଟକ କୋମ୍ପାନୀ ଉଦ୍ଧାର କରିବା ବଡ଼ କଷ୍ଟ । ତେବେ ଜନ୍ମ ବଳରେ ନୁହେଁ, କର୍ମ ବଳରେ କଟକ ଆଜି ପ୍ରତିଷ୍ଠିତ । ଏହି ଘଟଣାବହୁଳ ଏକ ହଜାର ବର୍ଷର ଗତିପଥରେ କେତୋଟି ମାଇଲ ଖୁଣ୍ଟକୁ ଚିହ୍ନାଇ ଦେବା ଆମର କର୍ତ୍ତବ୍ୟ ।

---

ସହକାରୀ କେନ୍ଦ୍ର ନିର୍ଦ୍ଦେଶକ,
ଆକାଶବାଣୀ, କଟକ

# ଭାରତୀୟ ସାଧାରଣତନ୍ତ୍ରରେ ସମତା ଓ ସ୍ୱତନ୍ତ୍ରତା

ଡକ୍ଟର ବ୍ରଜ କିଶୋର ସ୍ୱାଇଁ

ବ୍ରିଟିଶ କବଳରୁ ଭାରତବର୍ଷ ମୁକ୍ତି ପାଇ ସାରିବା ପରେ ଆପଣାର ସ୍ୱତନ୍ତ୍ରତାକୁ ଉପଯୋଗ କରିବା ଉଦ୍ଦେଶ୍ୟରେ ସମ୍ବିଧାନ ପ୍ରଣୟନ କରିଛି ଏବଂ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖଠାରୁ ଏହି ସମ୍ବିଧାନ କାର୍ଯ୍ୟକାରୀ ହୋଇ ଆସୁଛି । ଏହି ପରିପ୍ରେକ୍ଷୀରେ କେବଳ ପାଶ୍ଚାତ୍ୟ ଆଡ଼କୁ ଦୃଷ୍ଟି ନିକ୍ଷେପ କରି ଭାରତର ଜନଜୀବନକୁ ଦେଖିଲେ ଭାରତୀୟ ସାଧାରଣତନ୍ତ୍ରରେ ସମତା ଏବଂ ସ୍ୱତନ୍ତ୍ରତାକୁ ପରଖି ହେବ ନାହିଁ । ସେଥି ପାଇଁ କେତେକ ସ୍ୱଦେଶୀ ମର୍ମକୁ ପର୍ଯ୍ୟାଲୋଚନା କରିବାକୁ ହେବ ।

ଭାରତବର୍ଷରେ ମଣିଷର ସାମୂହିକ ବ୍ୟକ୍ତିତ୍ୱ ଅପେକ୍ଷା ବ୍ୟକ୍ତିଗତ ବ୍ୟକ୍ତିତ୍ୱର ଅଧିକମାତ୍ରାରେ ମୂଲ୍ୟାଙ୍କନ କରାଯାଇଛି । ମଣିଷର ସାମୂହିକ ବ୍ୟକ୍ତିତ୍ୱରେ ବ୍ୟକ୍ତି ଅନ୍ୟକୁ ଆଖି ଆଗରେ ରଖି ନିଜକୁ ସଜାଡ଼େ । ବ୍ୟକ୍ତିଗତ ବ୍ୟକ୍ତିତ୍ୱରେ ନିଜକୁ ଅନ୍ତର୍ମୁଖୀ ସାଧନା ଆଡ଼କୁ ମୁହାଁଏ । ସାମୂହିକ ବ୍ୟକ୍ତିତ୍ୱର ପ୍ରତିଷ୍ଠା ପାଇଁ ବ୍ୟକ୍ତିକୁ ବହିର୍ମୁଖୀ ସାଧନା କରିବାକୁ ପଡ଼ିଥାଏ । ବ୍ୟକ୍ତିର ବହିର୍ମୁଖୀ ସାଧନା ବିଶ୍ୱହିତୈଷଣା ପାଇଁ ଉଦ୍ଦିଷ୍ଟ ହୋଇଥିବା ବେଳେ ଅନ୍ତର୍ମୁଖୀ ସାଧନା ସମ୍ପୂର୍ଣ୍ଣ ଆଧ୍ୟାତ୍ମିକ । ଆଧ୍ୟାତ୍ମିକତାରେ ସ୍ୱତନ୍ତ୍ରତା ଅନ୍ତର୍ନିହିତ । ବିଶ୍ୱହିତୈଷଣାରେ ସମତା ପ୍ରତିଫଳିତ । ଉଭୟ ମଧ୍ୟରେ ଗୋଟିଏ ଯୋଗସୂତ୍ର ଅଛି । ଏହି ଯୋଗସୂତ୍ରକୁ ବୁଝାଯାଏ ସାମାଜିକ ସହବନ୍ଧନ । ଏହାର ଜାଗ୍ରତ ପ୍ରହରୀ ହେଉଛି ଶାସନ । ଯେତେଦିନ ପର୍ଯ୍ୟନ୍ତ ଏତାଦୃଶ ସମତା ଏବଂ ସ୍ୱତନ୍ତ୍ରତା ମଧ୍ୟରେ ଶାସନ ଯୋଗସୂତ୍ର ରକ୍ଷା କରି ଆସୁଥିବ ସେତେଦିନ ପର୍ଯ୍ୟନ୍ତ 'ବ୍ୟଷ୍ଟି' ସମଷ୍ଟି ମଧ୍ୟରେ ଗୋଟିଏ ଏକକ (Unit) ହୋଇଥିବ ଏବଂ 'ସମଷ୍ଟି' ବ୍ୟଷ୍ଟିଠାରେ ସାଧାରଣ ଲକ୍ଷଣ ଫୁଟାଇବାକୁ ଉଦ୍ୟମ କରୁଥିବ । ଏହାକୁ ହିଁ ଭାରତବର୍ଷର ପାରମ୍ପରିକ ଜୀବନଯାତ୍ରାରେ କହନ୍ତି ସମତା ଓ ସ୍ୱତନ୍ତ୍ରତାଭିତ୍ତିକ 'ସାଧାରଣତନ୍ତ୍ର' ।

ଭାରତବର୍ଷ ପାଶ୍ଚାତ୍ୟ ଶୈଳୀରେ ସାଧାରଣତନ୍ତ୍ରରାଷ୍ଟ୍ର ଭାବରେ ଆତ୍ମପ୍ରକାଶ କରି ସାରିବା ପରେ ଏଥିରେ ପ୍ରତିଷ୍ଠିତ ହୋଇଥିବା ସମତା ଏବଂ ସ୍ୱତନ୍ତ୍ରତା ସହିତ ପାରମ୍ପରିକ ବ୍ୟବସ୍ଥାର ମିଳନ ଘଟିପାରୁନାହିଁ । କାରଣ ଉଭୟର ଆଭିମୁଖ୍ୟ ପୃଥକ । ଭାରତବର୍ଷର ପାରମ୍ପରିକ ବ୍ୟବସ୍ଥାରେ ସମତା ଓ ସ୍ୱତନ୍ତ୍ରତା ପରସ୍ପର ସହଯୋଗୀ ହୋଇଥିବାବେଳେ ପାଶ୍ଚାତ୍ୟ ବ୍ୟବସ୍ଥାରେ ଏହା ପ୍ରତିଯୋଗୀ । ସାଧାରଣତନ୍ତ୍ର ନିମନ୍ତେ ସ୍ୱତନ୍ତ୍ରତାର ମହତ୍ତ୍ୱ ଯେତିକି, ସମତାର ମହତ୍ତ୍ୱ ସେତିକି । ଏହି ଦୁଇଟି ମଧ୍ୟରେ ଗୋଟିକର ଅଭାବ ହେଲେ ସାଧାରଣତନ୍ତ୍ରର ମର୍ଯ୍ୟାଦାରେ ହାନି ଉପୁଜେ । ତଥାପି ଉପଯୋଗିତା କ୍ଷେତ୍ରରେ ସମତା ଓ ସ୍ୱତନ୍ତ୍ରତା ମଧ୍ୟରେ ତାରତମ୍ୟ ପରିଲକ୍ଷିତ ହୋଇଥାଏ । ରାଷ୍ଟ୍ର ନିକଟରେ ବ୍ୟକ୍ତି (ନାଗରିକ) ଦାବୀ ଉପସ୍ଥାପିତ କରିବା ସମୟରେ ସମତା ଅପେକ୍ଷା ସ୍ୱତନ୍ତ୍ରତାର ପ୍ରାଥମ୍ୟକୁ ଅଙ୍ଗୀକାର କରିବାକୁ ପଡ଼ିଥାଏ । ଏହାର ଏକ ଖାସ୍ କାରଣ ଅଛି । ସ୍ୱତନ୍ତ୍ରତା ନଥାଇ ସମତା ପ୍ରାପ୍ତି ହେଲେ ମଧ୍ୟ ଏହି ସମତା ଦାସତ୍ୱର ଅଧୀନ ହୋଇଥାଏ । ଦାସତ୍ୱର ବେଦୀରେ ସମତାର କୌଣସି ମୂଲ୍ୟ ନାହିଁ । ଏତାଦୃଶ ସମତାର ସ୍ୱରୂପ ହେଉଛି ଅକିଞ୍ଚନତା କିମ୍ବା ଅକ୍ଷମତା । ଅନ୍ୟ ପକ୍ଷରେ ସମତା ନ ଥାଇ ସ୍ୱତନ୍ତ୍ରତା ପ୍ରାପ୍ତି ହେଲେ ତାଦୃଶ ସ୍ୱତନ୍ତ୍ରତା ସାର୍ବଜନୀନ ହୋଇପାରେ ନାହିଁ । ଏହି ସ୍ୱତନ୍ତ୍ରତା ସେତେବେଳେ କେବଳ କେତେକ ବିଶିଷ୍ଟବର୍ଗର ଲୋକଙ୍କ ହାତରେ ରହିଯାଏ । ବାସ୍ତବରେ ସେହିମାନେ ହିଁ ସ୍ୱତନ୍ତ୍ରତାକୁ ଉପଭୋଗ କରନ୍ତି । ଏହି ସ୍ଥଳରେ ସାଧାରଣ ଲୋକେ କେବଳ ଆଇନ ଦୃଷ୍ଟିରୁ କାଗଜପତ୍ରରେ ସ୍ୱତନ୍ତ୍ରତା ପାଇ ଥାଆନ୍ତି । କିନ୍ତୁ ବାସ୍ତବଦୃଷ୍ଟିରୁ ସେମାନେ ସ୍ୱତନ୍ତ୍ରତାର ସ୍ୱାଦୁ ଚାଖି ପାରନ୍ତି ନାହିଁ । ଅତଏବ ସ୍ୱତନ୍ତ୍ରତାର ପୁଷ୍ଟିନିମନ୍ତେ ସମତା ଅପରିହାର୍ଯ୍ୟ ଏବଂ ସମତାର ରକ୍ଷା ନିମନ୍ତେ ସ୍ୱତନ୍ତ୍ରତା ଏକାନ୍ତ ଜରୁରୀ । ପୁଷ୍ଟି ଏବଂ ରକ୍ଷା, ଉଭୟ ସମାନ ଗୁରୁତ୍ୱ ପାଇଲେ ସାଧାରଣତନ୍ତ୍ରରେ ସାଫଲ୍ୟ ଆସିଥାଏ ।

ଏହିପରି ଭାବରେ ସମତା ଓ ସ୍ୱତନ୍ତ୍ରତା ପରସ୍ପର ଅନ୍ୟୋନ୍ୟାଶ୍ରିତ ହୋଇଥିବାରୁ ଗବେଷକମାନେ ଏହାକୁ ପରସ୍ପର ବିରୋଧୀ ଦୁଇଟି ପ୍ରବୃତ୍ତି ଭାବରେ ଗ୍ରହଣ କରିଥାଆନ୍ତି । ଏହି ଦୁଇଟି ପ୍ରବୃତ୍ତି ମଧ୍ୟରେ ଏପରି ଶତ୍ରୁତା ଅଛି ଯେ ଏହା ମଧ୍ୟରେ କୌଣସି ଘଟଣାରେ ମଧ୍ୟ ରଫା ହୋଇପାରିବ ନାହିଁ କିମ୍ବା ବୁଝାମଣା ସଙ୍ଗଠନ ଦୃଷ୍ଟିକୋଣରୁ ହୋଇ ପାରିବ ନାହିଁ ।

ଏହି କ୍ଷେତ୍ରରେ ଗବେଷକମାନଙ୍କର ଏହା ମତ ଯେ ସ୍ୱତନ୍ତ୍ରତାର ପରାଜୟ ଘଟିଲେ ହିଁ ସମତାର ଜୈତଯାତ୍ରା ଘଟିପାରେ । ମଣିଷ ମଣିଷ ମଧ୍ୟରେ ବୈଷମ୍ୟ ପ୍ରାକୃତିକ ଅଟେ, କିନ୍ତୁ

ସମତା ସର୍ବଥା କୃତ୍ରିମ । ପାଶ୍ଚାତ୍ୟ ରାଷ୍ଟ୍ରରେ ଏହି ସିଦ୍ଧାନ୍ତଟି ଭାରତୀୟ ସାଂଖ୍ୟଦର୍ଶନ (ମୂଳ ପ୍ରକୃତିର ବିକୃତିଃ—ସାଂଖ୍ୟ କାରିକା : ବିକୃତିରୁ ସୃଷ୍ଟି । ବିକୃତି ହିଁ ବୈଷମ୍ୟର ସିଦ୍ଧାନ୍ତ ସହିତ ଖାପ ଖାଉଛି ଏବଂ ଭାରତୀୟ ଆୟୁର୍ବିଜ୍ଞାନର ଦାର୍ଶନିକ ସିଦ୍ଧାନ୍ତର ଅନୁରୂପ । କେତେକ କ୍ଷେତ୍ରରେ ଦେଖାଯାଏ ଯେ କେହି କେହି ବ୍ୟକ୍ତି ଆପଣା ଜନ୍ମଠାରୁ ଅନ୍ୟ ଅପେକ୍ଷା ଅଧିକ ସୁସ୍ଥ, ବୁଦ୍ଧିମାନ୍ ଓ ପ୍ରତିଭାଶାଳୀ ହୋଇ ଥାଆନ୍ତି । ଏହି ଧରଣର ଲୋକେ ଆପଣାର ସ୍ୱାଭାବିକତା ଦୃଷ୍ଟିରୁ ଅଧିକ ସ୍ୱାଚ୍ଛନ୍ଦ୍ୟଲାଭ କରିଥାଆନ୍ତି । ଜୀବନର ଦୌଡ଼ରେ ସେମାନେ ଆଗକୁ ମାଡ଼ି ଚାଲନ୍ତି, ଅଧିକ ସମ୍ପଳ ସଂଗ୍ରହ କରି ଜୀବନକୁ ଉପଭୋଗ୍ୟ କରିଥାଆନ୍ତି । ସାଫଲ୍ୟ ତାଙ୍କ ହାତ ପାଆନ୍ତାରେ ସବୁବେଳେ ଥାଏ । ଅନ୍ୟ ଧରଣର ଲୋକେ ଠିକ୍ ଏମାନଙ୍କ ବିପରୀତ । ସେମାନେ ସେତେ ଗୁଣସମ୍ପନ୍ନ ନୁହନ୍ତି । ସେମାନେ ଆପଣାର ସ୍ୱାଭାବିକତା ଯୋଗୁ ଅନିବାର୍ଯ୍ୟତାର ଡୋରି ବାନ୍ଧି ହୋଇ ପଛରେ ପଡ଼ିଥାଆନ୍ତି, ଆପଣାର ଜୀବନକୁ ସେତେ ସୁଖମୟ କରିପାରନ୍ତି ନାହିଁ କି ସଫଳତା ଅର୍ଜନ କରି ପାରନ୍ତି ନାହିଁ । ଯଦି ଏହି ଦୁଇସ୍ତରର ଲୋକଙ୍କ ମଧ୍ୟରେ ସାଧାରଣତନ୍ତ୍ର ରାଷ୍ଟ୍ରରେ ସମତା ଆଣିବା ପାଇଁ ଉଦ୍ୟମ କରାଯିବ, ତେବେ ଗୁଣବାନ୍ ବ୍ୟକ୍ତିଙ୍କୁ ତାଙ୍କର କ୍ଷମତାନୁସାରେ ଉନ୍ନତି କରିବାକୁ ଦିଆଯିବ ନାହିଁ ଏବଂ ପକ୍ଷାନ୍ତରେ ଗୁଣହୀନ ବ୍ୟକ୍ତିଙ୍କୁ ଠେଲି ପେଲି ଜୋର ଜବରଦସ୍ତ ଆଗେଇଯିବା ପାଇଁ ବାଧ୍ୟ କରାଯିବ । ଏହି କ୍ଷେତ୍ରରେ ଆପଣଙ୍କୁ ସ୍ୱୀକାର କରିବାକୁ ହେବ ଯେ ଗୁଣବାନ୍ ବ୍ୟକ୍ତିଙ୍କୁ ତା'ର କ୍ଷମତାନୁସାରେ ଉନ୍ନତିରୁ ବଞ୍ଚିତ କରିବାର ଅର୍ଥ ତା'ର ସ୍ୱତନ୍ତ୍ରତାରେ ବାଧା ହେବ ଏବଂ ଗୁଣହୀନ ବ୍ୟକ୍ତିଙ୍କୁ ବଳପୂର୍ବକ ଆଗେଇଯିବା ପାଇଁ ବାଧ୍ୟ କରାଯିବାର ଅର୍ଥ ମଧ୍ୟ ଠିକ୍ ସେଇଆ ।

ବର୍ତ୍ତମାନ ଉଦାହରଣ ମାଧ୍ୟମରେ ଏହାର ତର୍ଜମା କରାଯାଉ । ଯଦି ଆମ୍ଭେ ଦଶଜଣ ବ୍ୟକ୍ତିଙ୍କ ମଧ୍ୟରେ ପ୍ରତ୍ୟେକଙ୍କୁ ଏକହଜାର ଲେଖାଏଁ ଟଙ୍କା ଦେବା ଏବଂ ତାଙ୍କୁ କହିବା ଯେ ତୁମ୍ଭେମାନେ ଏହି ଟଙ୍କାକୁ ନିଜ ଇଚ୍ଛା ମୁତାବକ କାରବାର କର—ତେବେ ବର୍ଷ ଶେଷରେ ଆମ୍ଭେ ଦେଖିବା ଯେ ସମସ୍ତଙ୍କର ଆର୍ଥିକ ସ୍ଥିତି ଏକ ପ୍ରକାରର ନାହିଁ । ସେମାନଙ୍କ ମଧ୍ୟରେ ଯେ ବୁଦ୍ଧିମାନ୍ ଏବଂ ପରିଶ୍ରମୀ ସେ ଆପଣାର ପୁଞ୍ଜିକୁ ନିଶ୍ଚିତଭାବରେ ବଢ଼ାଇଥିବ ଏବଂ ଯେ ଅଳ୍ପବୁଦ୍ଧିସମ୍ପନ୍ନ ଓ ଆଳସ୍ୟପରାୟଣ ସେ ମୂଳ ଟଙ୍କାରୁ କିଛି ହରାଇ ଥିବ । ଯଦି ଏପରିସ୍ଥଳରେ ଉକ୍ତ ଦଶଜଣଙ୍କ ମଧ୍ୟରେ ଆମ୍ଭଙ୍କୁ ସମତା ରକ୍ଷିବାକୁ ହେବ ତେବେ ଆମ୍ଭଙ୍କୁ ଦୁଇଟି ଉପାୟ ଅବଲମ୍ବନ କରିବାକୁ ହେବ । ଯଥା—(୧) ଏମାନଙ୍କୁ ମନମୁତାବକ କାମ କରିବାକୁ ଦିଆଯିବ ନାହିଁ । (୨) ଅଥବା ପରିଶ୍ରମୀ ଲୋକଙ୍କଠାରୁ ଅତ୍ୟଧିକ ପୁଞ୍ଜି ଛଡ଼ାଇଆଣି ନିକମାଲୋକଙ୍କ ମଧ୍ୟରେ ବାଣ୍ଟିଦେବାକୁ ହେବ । ଯାହାହେଲେ ମଧ୍ୟ ଏହି ଦୁଇପ୍ରକାର ଉପାୟରେ ସ୍ୱତନ୍ତ୍ରତାର ଉଚ୍ଛେଦ କରିବା ବ୍ୟତୀତ ଅନ୍ୟ ବାଟ ନାହିଁ । ଏଥିପାଇଁ ପର୍ଯ୍ୟାଲୋଚକମାନେ କହନ୍ତି ଯେ ସ୍ୱତନ୍ତ୍ରତା ଏବଂ ସମତା ଏକ ଧରଣର ପ୍ରବୃତ୍ତି ନୁହେଁ, ଦୁହେଁ ଏକ ସଙ୍ଗେ ଚଳି ପାରିବେ ନାହିଁ ।

ଏତାଦୃଶ ସମସ୍ୟାର ସମାଧାନ ନିମନ୍ତେ ପ୍ରାଚୀନ ଭାରତୀୟ ରାଜଧର୍ମରେ କେତେକ ପ୍ରାୟୋଗିକ ପନ୍ଥା ବିଷୟରକୁ ନିଆଯାଇଛି । ରାଷ୍ଟ୍ର ତରଫରୁ ଯଦି କିଛି ନିୟନ୍ତ୍ରଣ କିମ୍ବା ସନ୍ତୁଳନ ଲାଗୁ କରା ନ ଯାଏ ତେବେ ସ୍ୱତନ୍ତ୍ରତା ଏବଂ ସମତା ପୃଥକ୍ ଭାବରେ ଏକାକୀ ଗତି କରିବା ଫଳରେ ଦୁହେଁ ପରସ୍ପର ବିରୋଧୀ ହୋଇ ପଡ଼ନ୍ତି । ଉଭୟ ମଧ୍ୟରେ ସମନ୍ୱୟ ରକ୍ଷା କରାଯାଇ ପାରେ ନାହିଁ । ବସ୍ତୁତଃ ନିୟନ୍ତ୍ରଣ ନ ରହିଲେ ସ୍ୱତନ୍ତ୍ରତା ଉଚ୍ଛୃଙ୍ଖଳତାର ରୂପ ଗ୍ରହଣ କରେ । ଉଚ୍ଛୃଙ୍ଖଳତାକୁ ନିୟନ୍ତ୍ରଣାଧୀନ କରିପାରିଲେ 'ସ୍ୱତନ୍ତ୍ରତା' ଜନ୍ମଗ୍ରହଣ କରେ ।

ବୈଷମ୍ୟରୁ ଉଚ୍ଛୃଙ୍ଖଳା ଜନ୍ମ ନିଏ । ଉଚ୍ଛୃଙ୍ଖଳା ଉପରେ ନିୟନ୍ତ୍ରଣ ଲାଗୁ କଲେ ଏହାର କାରଣ ସ୍ୱରୂପ ବୈଷମ୍ୟ ଦୂରୀଭୂତ ହୁଏ । ବୈଷମ୍ୟ ଦୂରୀକରଣର ଅର୍ଥ ହେଉଛି ସମତାର ସ୍ଥାପନ । ସାଧାରଣତନ୍ତ୍ର ରାଷ୍ଟ୍ରରେ ଏହି 'ନିୟନ୍ତ୍ରଣ'ର ମୂଲ୍ୟବୋଧ ଅଧିକ । ସ୍ୱତନ୍ତ୍ରତାକୁ କେନ୍ଦ୍ର କରି ଯେତେ ସମସ୍ୟା ଆସେ ସେ ଗୁଡ଼ିକର ସମାଧାନ ମୁଦ୍ଧ. ସମତାରେ ଅନ୍ତର୍ନିହିତ ।

ପାଶ୍ଚାତ୍ୟ ରାଜନୈତିକ ଦାର୍ଶନିକମାନେ ଏହି ମର୍ମକୁ ତାଙ୍କ ବିଶ୍ଳେଷଣରେ ଗ୍ରହଣ କରିଛନ୍ତି ।

ସ୍ୱାସ୍ଥ୍ୟ, ବୟସ ଓ ସ୍ଥିତି ଅନୁସାରେ ସବୁ ମଣିଷର ଶାରୀରିକ ସାମର୍ଥ୍ୟ ସମାନ ନୁହେଁ । କିନ୍ତୁ ଯେ ପର୍ଯ୍ୟନ୍ତ ମଣିଷର ଜୀବନ ସମାଜର ନିୟନ୍ତ୍ରଣାଧୀନ, ସେ ପର୍ଯ୍ୟନ୍ତ ଏହି ବୈଷମ୍ୟ/ ଅସମାନତା ସମାଜ ଉପରେ କୌଣସି ପ୍ରଭାବ ପକାଇ ପାରେ ନାହିଁ । ତଥାପି ସାମାଜିକ ବିକାଶର ଇତିହାସରେ ଏହାର ଅନେକ ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ ଯାହାର ପ୍ରତିକ୍ରିୟା ସମସ୍ତଙ୍କୁ ଭୋଗିବାକୁ ପଡ଼ିଥାଏ । କେବଳ ସାମର୍ଥ୍ୟ କାହିଁକି ମଣିଷର ଆର୍ଥିକ ସମ୍ବଳ ଏବଂ ମସ୍ତିଷ୍କର ବୌଦ୍ଧିକ ସମ୍ପଦର ମଧ୍ୟ ପ୍ରତ୍ୟେକ ସମୟରେ ନିୟନ୍ତ୍ରଣ ଆବଶ୍ୟକ । ଆର୍ଥିକ ସମ୍ବଳର ନିୟନ୍ତ୍ରଣହୀନ ବିନିଯୋଗ ସ୍ୱତନ୍ତ୍ର ଭାବରେ ହେଲେ ମଣିଷ ମଣିଷ ମଧ୍ୟରେ ଧନୀ—ଗରିବ ତରିଙ୍ଗ ଖୁବ୍ ଉତ୍କଟ ହୁଏ । ଏହାକୁ ରାଷ୍ଟ୍ରର ନିୟନ୍ତ୍ରଣାଧୀନ ନ କଲେ ରାଷ୍ଟ୍ରୀୟ ଜୀବନରେ ଭାରସାମ୍ୟ ହରାଇବାକୁ ପଡ଼େ । ଯଦି ଦୁର୍ବଳର ସ୍ୱତନ୍ତ୍ରତା ସବଳର ନିୟନ୍ତ୍ରଣାଧୀନ ହୁଏ ଏବଂ ନିର୍ଦ୍ଧନର ସ୍ୱତନ୍ତ୍ରତା ଧନିକର ନିୟନ୍ତ୍ରଣରେ କାର୍ଯ୍ୟ କରେ ତେବେ ସରଳବ୍ୟକ୍ତି ବାଧ୍ୟ ହୋଇ ଧୂର୍ତ୍ତବ୍ୟକ୍ତିର ଅକ୍ତିଆରରେ ରହିବ । ତେଣୁ ସାଧାରଣତନ୍ତ୍ର ରାଷ୍ଟ୍ରରେ ସ୍ୱତନ୍ତ୍ରତାର ଗୋଟିଏ 'ମାନକ' (Standard) ପ୍ରସ୍ତୁତ ହୋଇଥାଏ ଯେଉଁଥିରେ ଜଣେ ବ୍ୟକ୍ତି ଅନ୍ୟ ଜଣକ ପ୍ରତି ଏପରି ବ୍ୟବହାର କରିବା ଉଚିତ ଯେପରି ସେ ଚାହିଁବ ଯେ ଅନ୍ୟଜଣକତାପ୍ରତି ସେହିପରି ବ୍ୟବହାର କରୁ । ଏହାକୁ ସାଧାରଣତନ୍ତ୍ର ରାଷ୍ଟ୍ରରେ 'ଜାତୀୟ ସଦାଚାର କୁହାଯାଏ । ଯେ ପର୍ଯ୍ୟନ୍ତ ଲୋକଚରିତ୍ର ଏହି ମାନକ ଉପରେ ପ୍ରତିଷ୍ଠିତ ହୋଇନାହିଁ ସେ

ପର୍ଯ୍ୟନ୍ତ ସାଧାରଣତନ୍ତ୍ର ରାଷ୍ଟ୍ର ତା'ର ବାସ୍ତବ ଜୀବନରେ ସ୍ୱତନ୍ତ୍ରତା ଓ ସମତାକୁ ପରସ୍ପର ପରିପୂରକ କରିପାରି ନାହିଁ ବୋଲି ବୁଝିବାକୁ ହେବ ।

ଯାହା ହେଉନା କାହିଁକି, ମଣିଷର ଶାରୀରିକ ବିଷମତାକୁ ଏଡ଼ାଇ ଦେଇ ନାହିଁ । ତାହା ପ୍ରାକୃତିକ । ସେ ନିଶ୍ଚୟ ରହିବ । କିଛି ଲୋକ ସେମାନଙ୍କର ଜନ୍ମକାଳରୁ ଖୁବ୍ ହୃଷ୍ଟ ପୁଷ୍ଟ ହୋଇଥାଆନ୍ତି, ଆପଣାର ବୁଦ୍ଧିମତ୍ତା ପ୍ରକାଶ କରି ଥାଆନ୍ତି ଏବଂ ନିଜର ପ୍ରତିଭା ବଳରେ ଅନ୍ୟମାନଙ୍କଠାରୁ ନିଜକୁ ଅନ୍ୟ ଦୃଷ୍ଟିରେ ପ୍ରତିପାଦିତ କରିଥାଆନ୍ତି । କେହି କେହି କଳା, ସାହିତ୍ୟ, ବିଜ୍ଞାନ ପ୍ରଭୃତିରେ ଆପଣାର ରୁଚି ମୁତାବକ ପାରଦର୍ଶିତା ପ୍ରଦର୍ଶନ କରିଥାଆନ୍ତି । ଅନ୍ୟମାନଙ୍କଠାରେ ଏହା ସ୍ୱାଭାବିକଭାବରେ ଦେଖାଯାଇ ନଥାଏ । ତଥାପି ସେଠାରେ ମଧ୍ୟ ସ୍ୱତନ୍ତ୍ରତାକୁ ଆଧାର କରି ସମତାର ଉପଯୋଗ କରିବାକୁ ହୋଇଥାଏ ।

ଏହି କ୍ଷେତ୍ରରେ ସମତାର ଗୋଟିଏ ମୂଲ୍ୟବୋଧ ଠିକଣା କରିବାକୁ ପଡ଼େ । ଦୂଷିତ ସାମାଜିକ ବ୍ୟବସ୍ଥା ଏବଂ ସମ୍ପଦର ବିଷମ ବିତରଣ ଦ୍ୱାରା ଉପୁଜିଥିବା ବୈଷମ୍ୟ ଯୋଗୁ ଯଦି କୌଣସି ବ୍ୟକ୍ତିର ପ୍ରାକୃତିକ କିମ୍ବା ଜନ୍ମଗତ ଗୁଣର ବିକାଶ ହୋଇପାରୁ ନ ଥାଏ, ତେବେ ସେଠାରେ ସମତାର ସୂତ୍ରକୁ ପ୍ରୟୋଗ କରିବା ସାଧାରଣ ରାଷ୍ଟ୍ରର ମୁଖ୍ୟ ଦାୟିତ୍ୱ । ଏଠାରେ ଏହି ଧରଣର ସମତା ପାଇଁ ଲୋକେ ଦାବୀ କରନ୍ତି । ଏହି ଦାବୀକୁ ରାଷ୍ଟ୍ର ମାନି ନେଲେ ତାହା ରାଷ୍ଟ୍ରପ୍ରଦତ୍ତ ଅଧିକାର ଭାବରେ ଗୃହୀତ ହୋଇଥାଏ । କୃତ୍ରିମ ବିଷମତାଠାରୁ ସ୍ୱାଭାବିକ ବିଷମତାକୁ ରକ୍ଷା କରିବା ସାଧାରଣତନ୍ତ୍ର ରାଷ୍ଟ୍ରରେ ସମତାର ଆଭିମୁଖ୍ୟ । ସମତା ଯୋଗୁ ସ୍ୱତନ୍ତ୍ରତାକୁ ଉପଭୋଗ କରିବା ପାଇଁ ବ୍ୟକ୍ତି ଅବସର ପାଏ । ଏହି ଦାୟିତ୍ୱ ସମ୍ପାଦନ କରିବା ନିମନ୍ତେ ଶାସନର ଆବଶ୍ୟକତା ଉପଲବ୍ଧ କରାଯାଏ ।

ଯେତେବେଳେ ଭାରତବର୍ଷର ରାଜନୈତିକ ଜୀବନ ପାଶ୍ଚାତ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇନଥିଲା, ସେତେବେଳେ ବ୍ୟଷ୍ଟି ସ୍ୱତନ୍ତ୍ରତା ପାଇଁ ଅନ୍ତର୍ମୁଖୀ ସାଧନା ଏବଂ ସମତା ପାଇଁ ବହିର୍ମୁଖୀ ସାଧନାର ଉପଯୋଗ କରାଯାଉଛି । ସ୍ୱାଧୀନତାପ୍ରାପ୍ତି ପରେ ଏହା ଭିନ୍ନ ମୋଡ଼ ନେଉଛି । ଯାହା ଫଳରେ ଅନ୍ତର୍ମୁଖୀ ସାଧନାକୁ ବ୍ୟକ୍ତିଗତ ସ୍ୱାର୍ଥପରତା ଦୃଷ୍ଟିରେ ଦେଖାଯାଉଛି ଏବଂ ବହିର୍ମୁଖୀ ସାଧନାକୁ ଅତି ମାମୁଲି ଭାବରେ ଗ୍ରହଣ କରାଯାଉଛି । ଏହା ଠିକ୍ ନୁହେଁ । ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଏହି ଦ୍ୱିବିଧ ସାଧନାର ସମନ୍ୱୟରେ 'ସ୍ୱରାଜ'ର ସୂତ୍ରପାତ କରିଥିଲେ ଏବଂ ପ୍ରତ୍ୟେକ ମଣିଷର ଏହା ଜନ୍ମଗତ ଅଧିକାର ବୋଲି କହିଥିଲେ ।

ପରିଶେଷରେ ଏତିକି କହିହେବ ଯେ–

(କ) ସାଧାରଣତନ୍ତ୍ର କୈନ୍ଦ୍ରିକ ସମତା ଓ ସ୍ୱତନ୍ତ୍ରତାର ସଫଳତା ପାଇଁ ତ୍ୟାଗ ଭାବନାର ବାସ୍ତବାଭିମୁଖୀ ରୂପାୟନ ଆବଶ୍ୟକ ।

(ଖ) ଏହି ତ୍ୟାଗ ରାଷ୍ଟ୍ରୀୟସ୍ତରରେ ରାଜନୈତିକ ପ୍ରତାରଣାଠାରୁ ଊର୍ଦ୍ଧ୍ୱରେ ରହିବା ଆବଶ୍ୟକ ।

(ଗ) ପାଶ୍ଚାତ୍ୟ ଶୈଳୀରେ ସାଧାରଣତନ୍ତ୍ରରାଷ୍ଟ୍ର ବ୍ୟକ୍ତିର ସ୍ୱତନ୍ତ୍ରତାକୁ ଆଖି ଆଗରେ ରଖି ଯେତେବେଳେ ସମତାର କାର୍ଯ୍ୟାନ୍ୱୟନ କରେ, ସେତେବେଳେ ଉକ୍ତ ସମତାର ତ୍ରିବେଣୀ ଧାରା ଉନ୍ମୁକ୍ତ ହୁଏ । ତାହାକୁ ଯଥାର୍ଥରେ ବୁଝାଯାଏ ରାଜନୈତିକ ସମତା, ସାମାଜିକ ସମତା ଓ ଆର୍ଥିକ ସମତା । ଏହା ମଧ୍ୟରେ ସମନ୍ୱୟ ରହିବା ବାଞ୍ଛନୀୟ ।

(ଘ) ସମତା ଏକ ସଂସ୍କୃତି । ଅଭ୍ୟାସ ଦ୍ୱାରା ଏହା କାର୍ଯ୍ୟାନ୍ୱିତ ହୋଇଥାଏ । ଅଭ୍ୟାସପ୍ରାପ୍ତ ସମତା ନିକଟରେ ସ୍ୱତନ୍ତ୍ରତା ଆପେ ଆପେ ଆସି ପହଞ୍ଚିଯାଏ । ସମତାପାଇଁ ଦାବୀ ହୋଇପାରେ କାରଣ ଏହା ବାହ୍ୟ । କିନ୍ତୁ ସ୍ୱତନ୍ତ୍ରତାର ସ୍ୱୀକୃତି ଆବଶ୍ୟକ । କାରଣ ଏହା ଆଭ୍ୟନ୍ତରୀଣ । ଉଭୟ ମଧ୍ୟରେ ଯୋଗାଯୋଗ ରକ୍ଷା କରାଇବା କ୍ଷେତ୍ରରେ ଯେଉଁ ରାଷ୍ଟ୍ର ବାସ୍ତବ ଭୂମିକା ଗ୍ରହଣ କରିପାରେ ସେ ରାଷ୍ଟ୍ର ହିଁ ପ୍ରକୃତରେ ସାଧାରଣତନ୍ତ୍ର ରାଷ୍ଟ୍ର ।

(ଙ) ଭାରତୀୟ ସାଧାରଣତନ୍ତ୍ରର ବିଶେଷତ୍ୱ ଏହି ଯେ ଏଠାରେ ସମତା ଓ ସ୍ୱତନ୍ତ୍ରତା ସମ୍ବିଧାନକୁ ମଝିରେ ରଖି ବଳ କଷାକଷି ହୁଅନ୍ତି ନାହିଁ । କିନ୍ତୁ ଉଭୟ ମଧ୍ୟରେ ସମନ୍ୱୟ ପାଇଁ ଭୂମି ପ୍ରସ୍ତୁତ ହେବା ଦରକାର ।

ଉପାଧ୍ୟାୟ,
ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗ,
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ,
ଶ୍ରୀବିହାର, ପୁରୀ

# ଓଡ଼ିଆ ପତ୍ରପତ୍ରିକା

ଶ୍ରୀ ନରହରି ଉପାଧ୍ୟାୟ

ମାନବ-ସଭ୍ୟତାର ଅଭ୍ୟୁଦୟକ୍ରମରେ ସଂସ୍କୃତି ଓ ସାହିତ୍ୟର ଅଙ୍ଗାଙ୍ଗୀ ଯୁଗେଯୁଗେ ଅବ୍ୟାହତ ଏକ ପ୍ରବହମାନ ପରମ୍ପରା । କେଉଁ ସୁଦୂର ସ୍ମରଣାତୀତ କାଳରେ ଏଇ ଭାରତ ଭୂମିରେ ତା'ର ସୂତ୍ରପାତ ହୋଇଥିଲା । ବିଶ୍ୱର ଆଦି ସାହିତ୍ୟ ବୈଦିକ ସାହିତ୍ୟ ଓ ଆଦି ସଂସ୍କୃତି ବୈଦିକ ସଂସ୍କୃତି । ଉଭୟର ଅଙ୍ଗାଙ୍ଗୀ ସମ୍ବନ୍ଧ ଏବଂ ସନାତନତା ଇତିହାସ-ପୁରାଣ-ପ୍ରମାଣସିଦ୍ଧ । ପ୍ରୋକ୍ତ ସାହିତ୍ୟ-ସଂସ୍କୃତିର ଉନ୍ମେଷ ଅଧ୍ୟାତ୍ମଭିତ୍ତିକ, ଦର୍ଶନ ବ୍ରହ୍ମତାତ୍ତ୍ୱିକ, ସ୍ୱରୂପ ସାର୍ବଭୌମିକ, ଆଦର୍ଶ ସାର୍ବଜାତିକ, ବାଣୀ ଆସମୁଦ୍ରଜଗତ୍ ଏବଂ ଲକ୍ଷ୍ୟ ଜଗଦ୍ଧିତ, ଅର୍ଥାତ୍ ସମଗ୍ର ଜଗତର ସର୍ବାତ୍ମକ ହିତ । ସୁତରାଂ ବୈଦିକୀଜନହିତ ଚେତନାହିଁ ସାହିତ୍ୟର ମୂଳାଧାର । ସଭ୍ୟତାର ବିକାଶ ସଙ୍ଗେସଙ୍ଗେ ସମାଜର ସର୍ବାଙ୍ଗୀନ ହିତକଳ୍ପେ ସାହିତ୍ୟର ପ୍ରଚାର-ପ୍ରସାର ମାଧ୍ୟମ ତଥା ଆନୁଷଙ୍ଗିକ ଯାନ୍ତ୍ରିକ କୌଶଳ ପ୍ରଗତିର ପଦକ୍ଷେପ ତଥା ବେଗକୁ ବହୁ ଗୁଣ ବଢ଼ାଇ ଦେଇଛି । ଆହୁରି ଉତ୍କର୍ଷତର ଉତ୍ତରୋତ୍ତର ସାଧନା ଓ ସମ୍ଭାବନାପୂର୍ଣ୍ଣ ଚମକପ୍ରଦ ସାଫଲ୍ୟ । ଏହି ପରିପ୍ରେକ୍ଷଣରେ ଆମେ ଆକଳନ କରିବା ସାହିତ୍ୟ ସୃଷ୍ଟି ପରିଧିରେ ଓଡ଼ିଆ ପତ୍ରପତ୍ରିକାର ଜନ୍ମବୃତ୍ତାନ୍ତ, ପର୍ଯ୍ୟାୟିକ ପ୍ରଗତି, ଭୂମିକା ବୈଶିଷ୍ଟ୍ୟ ଏବଂ ଔଦ୍ୟୋଗିକ ଅବଦାନ ଇତ୍ୟାଦି ।

ବିଗତ ଚତୁର୍ଦ୍ଦଶ ଶତାବ୍ଦୀରୁ ଓଡ଼ିଆ ସାହିତ୍ୟର ସ୍ପଷ୍ଟ ରୂପରେଖ ଦେଖିବାକୁ ମିଳେ । ଏ ହେଉଛି ଶୂଦ୍ରମୁନି ସାରଳାଦାସଙ୍କ ଯୁଗ । ତା'ର ପୂର୍ବବର୍ତ୍ତୀ କାଳର ଲିଖିତ ସାହିତ୍ୟର ସ୍ଥିତି ଏବେ ସୁଦ୍ଧା ଅଭେଦ୍ୟ ଯବନିକାର ଅନ୍ତରାଳେ । ଯାହାହେଉ, ସାରଳାଙ୍କ ପରେ ପରେ ଆସିଛି ପ୍ରଖ୍ୟାତ ପଞ୍ଚସଖା ପ୍ରବର୍ତ୍ତିତ ତତ୍ତ୍ୱାତ୍ମକ ଅଧ୍ୟାତ୍ମ ସାହିତ୍ୟ ଯୁଗ, ଓଡ଼ିଆ ପୁରାଣ ସାହିତ୍ୟ ଯୁଗ, କାବ୍ୟ ଓ ସଙ୍ଗୀତ ସାହିତ୍ୟ ଯୁଗ । ମଧ୍ୟଯୁଗାନ୍ତରେ, ବିଶେଷଭାବେ ରାଜନୈତିକ ବିବର୍ତ୍ତନ । ଫଳତଃ, ଯେଉଁ ବିଦେଶୀ କଳା କୌଶଳ ପ୍ରଭାବିତ ଆଧୁନିକ ଯୁଗର ଆବିର୍ଭାବ ଘଟିଛି, ସେଥିରେ ଉତ୍କଳ ଭାରତୀ ଦିନୁଦିନ ନବନବ ରୂପବୈଭବର ବିପଣୀ ମେଲାଇ ସାରସ୍ୱତ ମଞ୍ଚରେ ବେଶ୍ ମନୋହାରିଣୀ ଚମତ୍କାରିତା ପ୍ରଦର୍ଶନ କରିଆସିଛି ପ୍ରାୟ ଶତେବର୍ଷର କିଞ୍ଚିତ୍ ଅଭ୍ୟାଧିକ କାଳାବଧି । ଏହି ସମୟ ଭିତରେ ଆମ ସାହିତ୍ୟ କ୍ଷେତ୍ରରେ ଯେଉଁ ନୂତନ ଦିଗନ୍ତଟି ଉନ୍ମୋଚିତ ହୋଇଛି, ତାହା ପତ୍ରପତ୍ରିକାର ମର୍ଯ୍ୟାଦା ସମ୍ପନ୍ନ ସୃଷ୍ଟିକ୍ରମ । ଆମର ପାଖପଡ଼ୋଶୀ ବଙ୍ଗଭାରତୀ ଏ ଦିଗରେ ଅନୁକୂଳ ପରିବେଶ ହେତୁ ଯଥେଷ୍ଟ ଆଗେଇ ସାରିଥିଲେ । ସେତେବେଳକୁ ଆମର ସ୍ୱତନ୍ତ୍ର ରାଜ୍ୟପାହିଆ ନଥିଲା । ଓଡ଼ିଆଭାଷୀ ଅଞ୍ଚଳ ଖଣ୍ଡଖଣ୍ଡ ହୋଇ ବିଭିନ୍ନ ପଡ଼ୋଶୀ ପ୍ରଦେଶରେ ବାଣ୍ଟି ହୋଇ ଥିଲା । ଯାହାହେଉ, ୧୯୩୬ ମସିହାରେ କବନ୍ଧତୁଲ୍ୟ ଖଣ୍ଡିତ ପ୍ରଦେଶଟିଏ ପାଇବା ପରେ ଓଡ଼ିଆ ସାହିତ୍ୟର ସାମଗ୍ରିକ ଉନ୍ନତି ସହିତ ଓଡ଼ିଆ ପତ୍ରପତ୍ରିକାର ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଅଭିବୃଦ୍ଧିପାଇଁ ପ୍ରଶସ୍ତ ପରିବେଶ ସୃଷ୍ଟି କଲା । ପୁନଶ୍ଚ ଖ୍ରୀ: ୧୯୪୮ରେ ଗଡ଼ଜାତ ମିଶ୍ରଣ ସାରସ୍ୱତ ସୀମାସରହଦକୁ ଆହୁରି କିଛି ବଢ଼ାଇ ଦେଲା । ସ୍ୱାଧୀନୋତ୍ତର କାଳରେ ଯୋଗାଯୋଗ ବ୍ୟବସ୍ଥାର ଯଥେଷ୍ଟ ଉନ୍ନତି ଘଟିବା ଦ୍ୱାରା ଦୂରଦୂରାନ୍ତ ଆଦାନପ୍ରଦାନ କ୍ଷେତ୍ରରେ ବେଶ୍ ଅନୁକୂଳ ପରିସ୍ଥିତିର ସୂତ୍ରପାତ ହେଲା । ପାଠକ ସଂଖ୍ୟା, ଆଶାନୁରୂପ ନହେଲେ ହେଁ, ଅପେକ୍ଷାକୃତ ଯଥେଷ୍ଟ ବୃଦ୍ଧି ଘଟିଛି ।

ପତ୍ରପତ୍ରିକା କହିଲେ ବିଶେଷତଃ ସମ୍ବାଦପତ୍ର ଏବଂ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ପ୍ରକାଶିତ ସାପ୍ତାହିକ, ପାକ୍ଷିକ, ମାସିକ, ଷଡ଼ମାସିକ ଏପରିକି ବାର୍ଷିକ ମାଗାଜିନ୍ ବା ପତ୍ରିକାକୁ ବୁଝାଏ । ଏତଦ୍ ବ୍ୟତୀତ ବିଶେଷ ପର୍ବପର୍ବାଣି ବା ଘଟନାସମ୍ବନ୍ଧିତ ସାମୟିକ ପ୍ରକାଶନ ମଧ୍ୟ ଏହାର ପରିସରଭୁକ୍ତ । ଯୁଗପରିବର୍ତ୍ତନ ଧାରାରେ ଦୃଷ୍ଟିକୋଣ ପ୍ରସାରଣ ଦିଗରେ ପତ୍ରପତ୍ରିକାର ଉପଯୋଗିତା ବହୁତ ବେଶୀ । ଆଜିର ଆଖିଖୋଲା ମଣିଷ ଆଉ ତା'ର ସାର୍ଦ୍ଧଶତାବ୍ଦୀ ପୂର୍ବର ପୂର୍ବପୁରୁଷଙ୍କ ଭଳି ସୀମିତ କ୍ଷେତ୍ରରେ କୂପମଣ୍ଡୁକଟିଏ ହୋଇ ରହିବାକୁ ପସନ୍ଦ କରେ ନାହିଁ । ଦିନୁଦିନ ନବନବ ବିବିଧ ବୈଚିତ୍ର୍ୟଭରା ନୂଆ ଦୁନିଆର ଅନ୍ଧିସନ୍ଧି ଭେଦିବାକୁ ସେ ଚାହେଁ । ସେଥିପାଇଁ ତ ଆବଶ୍ୟକ ମାର୍ଗଦର୍ଶୀ ସ୍ତମ୍ଭ ଆଉ ଦିଗ୍‌ଦର୍ଶୀ ଆଲୋକ । କୁହାଯାଇପାରେ, ପ୍ରୟାସୀ ଅନୁସନ୍ଧାନୀର ଅନୁସନ୍ଧିତ୍ସା ପରିପୂର୍ତ୍ତି ନିମନ୍ତେ ଏ କାଳରେ ବହୁସୁବିଧା ସୁଯୋଗ ସୃଷ୍ଟି ହୋଇଛି । ମୁଦ୍ରଣ ଶିଳ୍ପର ଦ୍ରୁତ ଅଭିବୃଦ୍ଧି ଫଳରେ ସବୁପ୍ରକାରର ପୁସ୍ତକ ବଜାରରେ ସୁଲଭ । ପଠନପାଠନର ସୁବିଧା ଯୋଗାଇଦେବା ଲକ୍ଷ୍ୟରେ ଉପଯୁକ୍ତ କ୍ଷେତ୍ର ବିଶେଷରେ ସୁସମୃଦ୍ଧ ଗ୍ରନ୍ଥଭଣ୍ଡାର ଓ ପୁସ୍ତକାଗାରମାନ ଗଢ଼ିଉଠିଛି । ତେବେ ଚିନ୍ତା କରିବାର କଥା, ବହୁ ସଂଖ୍ୟାଧିକ ଜନସାଧାରଣଙ୍କର ଯତ୍‌କିଞ୍ଚିତ୍ ଅବସରକାଳୀନ ପଠନେଚ୍ଛାର ପ୍ରଶମନ ପାଇଁ ପୂର୍ବୋକ୍ତ ସୁଯୋଗମାନ କେତେଦୂର ଉପଯୋଗୀ । ସାମ୍ପ୍ରତିକ ସାରସ୍ୱତ ସୃଷ୍ଟିର ପରମ ଲକ୍ଷ୍ୟ ହେଉଛି ଗଣର ଆବଶ୍ୟକତା ପୂରଣ ଏବଂ

ସହଜ ସୁଲଭ ମୂଲ୍ୟ ଓ ମାଧ୍ୟମରେ ସୃଷ୍ଟ ଉପାଦାନର ସମ୍ପ୍ରସାରଣ । ସାର୍ବଜନୀନତା ହିଁ ପ୍ରୋକ୍ତ ଆଭିମୁଖ୍ୟର ଗୁରୁତ୍ୱପୂର୍ଣ୍ଣ ଉପଲବ୍ଧି । ମଣିଷ କେବଳ ସୁନ୍ଦର-ସୁନ୍ଦର ଆକୃତିଟିଏ ନେଇ ଜନ୍ମ ହୋଇ ପଡ଼ିଲେ ପୂର୍ଣ୍ଣାଙ୍ଗପ୍ରାପ୍ତ ମଣିଷଟିଏ ହୋଇଯାଏ କି ? କଦାପି ନୁହେଁ । ସେପରି ମଣିଷ ଯେପରି ପିତୁଳାତୁଲ୍ୟ । ମଣିଷର ସାମାଜିକ ପରିବେଶରେ ମାନବୀୟ ଚିନ୍ତାଧାରା, ଜୀବନାଦର୍ଶ, ମନଃସ୍ଥିତି ଓ ମୂଲ୍ୟବୋଧ ଆଦି ମହତ୍ତ୍ୱଗୁଣ ଦ୍ୱାରା ତା'ର ଜୀବନକୁ ପ୍ରଭାବିତ କରାଇ ମଣିଷତ୍ୱକୁ ବିକଶିତ କରିବାକୁ ହୁଏ । ଏ ପଦ୍ଧତିକୁ କୁହାଯାଏ ମଣିଷ ଗଢ଼ିବାର କଳା । ପ୍ରସଙ୍ଗକ୍ରମେ ଆହୁରି ଟିକିଏ ସ୍ପଷ୍ଟୀକରଣ କରି କହିଲେ, ମଣିଷ ହାତଗଢ଼ା କାଷ୍ଠ ପାଷାଣ ମୃତ୍ତିକାଦି ପିଣ୍ଡରେ ମନ୍ତ୍ର ଆବାହନ ଦ୍ୱାରା ଦିବ୍ୟତ୍ୱ ଆରୋପ କରି ତାହାକୁ ଆରାଧ୍ୟ ଦେବତାର ମର୍ଯ୍ୟାଦା ଦିଆଯାଏ । ସେହିପରି ମଣିଷଟି ଏକ ପ୍ରକୃତିସୃଜିତ ଭୂତପିଣ୍ଡ ମାତ୍ର । ସ୍ୱଭାବତଃ ନିର୍ଲିପ୍ତ-ନିରାସକ୍ତ ତଦନ୍ତରସ୍ଥ ଦିବ୍ୟାତ୍ମା । ଦୃଷ୍ଟିପ୍ରସାରିଣୀ ଜ୍ଞାନବୁଦ୍ଧି ଦ୍ୱାରା ଶରୀର ସମ୍ପୃକ୍ତ ମଣିଷତ୍ୱକୁ ସମ୍ବଳିତ କଲେହିଁ, ସେ ହୁଏ ମନୁଷ୍ୟ ମାନ୍ୟତାର ନ୍ୟାଯ୍ୟ ଅଧିକାରୀ, ଅନ୍ୟଥା ମୂଲ୍ୟଗୁଣବିହୀନ ପଶୁ ସମାନ । ସୁତରାଂ ମଣିଷକୁ ମଣିଷକରି ଗଢ଼ିବା ନିମନ୍ତେ ଯେତେ ଯେତେ ପରିବେଶ-ପରିସ୍ଥିତି ସୃଷ୍ଟି ଆବଶ୍ୟକ, ତାହାମଧ୍ୟରେ ସାର୍ବଜନୀନ ପତ୍ରପତ୍ରିକାର ସ୍ଥାନ ସର୍ବାଗ୍ରେ । ଏହି ଅତ୍ୟାବଶ୍ୟକ ଲକ୍ଷ୍ୟ ସାଧନର ଅଧ୍ୟମାରମ୍ଭ ହୁଏ ବିଗତ ଊନବିଂଶ ଶତାବ୍ଦୀରେ । ଅତ୍ୟେ ଆଲୋଚନାର ପରିସର ସୀମିତ ଏବଂ ଲକ୍ଷ୍ୟ କେବଳ ଓଡ଼ିଆ ପତ୍ରପତ୍ରିକା ପ୍ରାରମ୍ଭ ଓ ପ୍ରଗତି ପର୍ଯ୍ୟାୟର ଯଥାସଂକ୍ଷିପ୍ତ ସୂଚନା ମାତ୍ର ଦେବା ।

ପ୍ରଥମତଃ ଧର୍ମଭିତ୍ତିକ ପ୍ରଚାର ପ୍ରସାର ଆଭିମୁଖ୍ୟରୁ ଓଡ଼ିଆ ସାହିତ୍ୟ ପତ୍ରିକାର ଭିତ୍ତିପାତ ହୁଏ । ଓଡ଼ିଶାର ସର୍ବପ୍ରଥମ ପ୍ରାନ୍ତୀୟ ଭାଷା ସାହିତ୍ୟ ପୃଷ୍ଠିକା ହେଉଛି 'କୁଜିବର ପତ୍ର' । ଜନୈକ ବରେଣ୍ୟ ମନୀଷୀ ସାଧୁ ସୁନ୍ଦର ଦାସ ବିଗତ ଶତକର ପ୍ରଥମାର୍ଦ୍ଧରେ ପ୍ରୋକ୍ତ ହାତଲେଖା ପତ୍ରଟିର ପ୍ରସାରଣ ଆରମ୍ଭ କରିଥିଲେ । ସେଥିରେ ମୁଖ୍ୟତଃ ଧର୍ମନୀତି ସମେତ ସମାଜନୀତି, ରାଜନୀତି ବିଷୟକ ଆଲୋଚନାମାନ ସ୍ଥାନିତ ହେଉଥିଲା । ସେ ସମୟରେ ହାତଲେଖା ପତ୍ରିକାଟିର ପ୍ରସାର ଅବଶ୍ୟ ସୀମିତ ଥିବ । ତଥାପି ଏହାର ଏକ ବିଶେଷ ଉଲ୍ଲେଖନୀୟ ଅବଦାନ ହେଉଛି, ସେତେବେଳେ ନୂଆ ହୋଇ ଓଡ଼ିଶା ମାଟିରେ ଆସ୍ଥାନ ଜମଉଥିବା ବିଦେଶୀ ଖ୍ରୀଷ୍ଟିୟାନ ମିଶନାରୀ ପ୍ରଚାରକମାନେ ସାଧୁ ସୁନ୍ଦରଙ୍କ କୁଜିବର ପତ୍ରରୁ ପ୍ରେରଣା ଲାଭ କରି ଓଡ଼ିଆ ପତ୍ରିକା ମାଧ୍ୟମରେ ଖ୍ରୀଷ୍ଟ ଧର୍ମମତ ପ୍ରଚାର-ପ୍ରସାର ପାଇଁ ଯଥେଷ୍ଟ ଉତ୍ସାହିତ ହୋଇଥିଲେ । ପ୍ରଥମକରି ଓଡ଼ିଆ ଭାଷାର ମୁଦ୍ରିତ ପତ୍ରପତ୍ରିକା ପ୍ରକାଶନ କ୍ଷେତ୍ରରେ ୧୮୪୯ ମସିହା ନିଶ୍ଚୟ ଏକ ସ୍ମରଣୀୟ ବର୍ଷ । ଜନୈକ ୟୁରୋପୀୟ ପାଦ୍ରୀ ରେଭେରେଣ୍ଡ ଲେସି ସେହି ବର୍ଷ କଟକରେ କୋଟିଏ ମୁଦ୍ରଣ ପ୍ରେସ୍ ବସାଇଲେ ଏବଂ ନିଜ ସମ୍ପାଦନାରେ 'ଜ୍ଞାନାରୁଣ' ନାମକ ପ୍ରଥମ ମୁଦ୍ରିତ ଓଡ଼ିଆ ପତ୍ରିକା ପ୍ରକାଶ କଲେ । ଭାଷା ସାହିତ୍ୟ ଦୃଷ୍ଟିରୁ ଅତି ନିମ୍ନମାନର ଥିଲେ ହେଁ, ନୂତନତା ଦୃଷ୍ଟିରୁ ତଦାନୀନ୍ତନ ସ୍ୱଳ୍ପସଂଖ୍ୟକ ପାଠକ ମହଲରେ ଏହା ବେଶ୍ ଆଦୃତିଲାଭ କରିଥିବା କୁହାଯାଏ । ଅଳ୍ପ ଦିନ ଚାଲିବା ପରେ ଏହାର ପ୍ରକାଶନ ବନ୍ଦ ହୋଇଯିବାରୁ ଖ୍ରୀଷ୍ଟ ମିଶନାରୀ ସଂସ୍ଥା 'ଅରୁଣୋଦୟ' ନାମରେ ଅନ୍ୟ ଏକ ପତ୍ରିକା ପ୍ରକାଶ କଲେ । ଏହାର ମୁଖ୍ୟ ଆଭିମୁଖ୍ୟ ଥିଲା ଧର୍ମାଲୋଚନା, ତେଣୁ ଲୋକପ୍ରିୟତା ହାସଲ କରିବା ଥିଲା ସହଜ ଓ ସ୍ୱାଭାବିକ । ଏହାର ସେତେବେଳେକାର ପ୍ରସାର ସଂଖ୍ୟା, ପର୍ଯ୍ୟାୟକ୍ରମ (Periodicity) ଏବଂ କେତେ କାଳ ଚାଲିଥିଲା, ସେ ବିଷୟରେ ବିଶେଷ ନିର୍ଭରଯୋଗ୍ୟ ତଥ୍ୟ ଅନୁସନ୍ଧାନ ସାପେକ୍ଷ । ତେବେ କଟକରେ ଅରୁଣୋଦୟ ପ୍ରେସ୍‌ର ସ୍ମୃତି ଓ ସ୍ଥିତି ଏବେ ମଧ୍ୟ ବିଦ୍ୟମାନ ।

ବର୍ତ୍ତମାନ, ମୁଦ୍ରାଯନ୍ତ୍ର ପ୍ରଚଳନପରେ ଲୋକପ୍ରିୟ ସାଧାରଣ ସାହିତ୍ୟ ପତ୍ରିକାର ଆବିର୍ଭାବ ଲଗ୍ନକୁ ସ୍ମୃତିକୁ ଅଣାଯାଉ । ଗତଶତକର ନବମଦଶକ ବେଳକୁ ଓଡ଼ିଆ ଜାତି ଆଉ ଓଡ଼ିଶା ମୂଳକ ଦୁଇଟି ବଡ଼ ଜୀବନମରଣ ଆହ୍ୱାନର ସମ୍ମୁଖୀନ ହୋଇଥିଲା । ଗୋଟିଏ ମାନୁଷ ଏବଂ ଅନ୍ୟଟି ଦୈବ । ଇଂରେଜମାନଙ୍କର ଓଡ଼ିଶା ଦଖଲ ପରେ (ଖ୍ରୀ : ୧୮୦୩) ବଙ୍ଗୀୟ ରାଜକର୍ମଚାରୀବର୍ଗ ହେଲେ ତାହାର ଭାଗ୍ୟନିୟନ୍ତା । କାନ୍ତିଚନ୍ଦ୍ର ନାମଧେୟ ଜନୈକ ଶିକ୍ଷାଧିକାରୀଙ୍କ ପ୍ରରୋଚନାରେ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଦାବି କରିବା ସହିତ ତା'ର ସମୂଳ ଉଚ୍ଛେଦ ପାଇଁ ପ୍ରବଳ କୁଚକ୍ର ଆରମ୍ଭ କରିଦେଲେ ଅସହ ବଙ୍ଗୀୟ ଗୋଷ୍ଠୀ । ପ୍ରତିରୋଧ ଶକ୍ତି ଖୁବ୍ ଦୁର୍ବଳ ହେଲେ ହେଁ, ସଫଳ ମୁକାବିଲା ପାଇଁ ଅଣ୍ଟା ଭିଡୁଥିବା ବେଳେ କରାଳ ବପୁ ବିସ୍ତାରି ଅସ୍ୱନକ ଆସିଗଲା । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ଯେଉଁ କ୍ରମେ ଦୈବ ଦୁର୍ବିପାକଜନିତ ଲୋମହର୍ଷଣକାରିଣୀ ମଡ଼କଯାତନାର ପଟାନ୍ତର ନଥିଲା କି ନାହିଁ, ଓଡ଼ିଶା ଇତିହାସରେ । ଅପରିଣାମଦର୍ଶୀ ବିଦେଶୀ ଶାସନତନ୍ତ୍ରର ଅସହାୟ ସ୍ଥିତି, ଅସଂଖ୍ୟ ଅନକ୍ଲିଷ୍ଟ ଅସ୍ଥିକଙ୍କାଳସାର ମୁମୂର୍ଷୁ ଜନତାର କରୁଣ ଚିତ୍କାର ଶୁଣିବାକୁ ବା ଶୁଣାଇବାକୁ କୌଣସି ଗଣମାଧ୍ୟମ ପ୍ରାୟ ନଥିଲା । ତେଣୁ ଯାହା ବାର୍ଯ୍ୟ, ତାହା ନେଲା ଅନିବାର୍ଯ୍ୟ ରୂପ । ଏକ ପକ୍ଷରେ ମାତୃଭାଷା ସୁରକ୍ଷା ସଂଗ୍ରାମ ଏବଂ ଅନ୍ୟପକ୍ଷରେ ତତ୍କାଳିକ ବିକ୍ଷୁବ୍ଧ କରାଳ କାଳଗର୍ଭରୁ ଜନ୍ମନେଲା ଏକ ଦୀପ୍ତିମୟୀ ସାପ୍ତାହିକୀ ପତ୍ରିକା 'ଉତ୍କଳ ଦୀପିକା' । ଉତ୍କଳଦରଦୀ କର୍ମଯୋଗୀ ଗୌରୀଶଙ୍କର ରାୟ ମହାଭାଗଙ୍କର ଏ ଦୁଃସାହସିକ ତଥା ପ୍ରୋତ୍ସାହନମୂଳକ ପଦକ୍ଷେପ ଓଡ଼ିଆ ଜାତୀୟ ଇତିହାସରେ ଅବିସ୍ମରଣୀୟ । ତଦାନୀନ୍ତନ ମୁଷ୍ଟିମେୟ ଲେଖକ ଗୋଷ୍ଠୀର ପୂର୍ଣ୍ଣପ୍ରାଣ ସହଯୋଗ ଓ ପୋଷକତା ଲାଭକରି ଦୀର୍ଘ ସାତଦଶନ୍ଧି ଧରି 'ଦୀପିକା' ଜାତୀୟ କର୍ତ୍ତବ୍ୟସଚେତନ ବାର୍ତ୍ତାବାହିକା ରୂପେ ଉତ୍କଳବାସୀଙ୍କ ସେବାରେ ଲାଗିଥିବା ଜଣାଯାଏ । ଊନବିଂଶ ଶତକର ଶେଷ ତିନି ଦଶନ୍ଧିକୁ ଓଡ଼ିଆ ପତ୍ରପତ୍ରିକା ପ୍ରକାଶନର ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ । ଦୀପିକାର ଅବାରିତ ଜୟଯାତ୍ରା ଓ ଅଭାବନୀୟ

ଲୋକପ୍ରିୟତା ଅନ୍ୟାନ୍ୟ ବହୁ ପ୍ରତିଭାଶାଳୀ ସାହିତ୍ୟରଥୀ ଏବଂ ଜାତୀୟ ଦୁର୍ଦ୍ଦିନ ସଚେତନ ଅଭ୍ୟୁତ୍‌ଥାନକାମୀ ଧନଶାଳୀ ବ୍ୟକ୍ତିବିଶେଷଙ୍କୁ ନବନବ ରୂପରେଖ ଦେଇ ପତ୍ରିକାମାନ ପ୍ରକାଶ କରିବାକୁ ଉତ୍ସାହିତ କରିଥିଲା । ହାତଗଣତିରେ କହିବାଭଳି ଯେଉଁ ପତ୍ରିକାଗୁଡ଼ିକ ସେ ସମୟରେ ପ୍ରକାଶିତ ହୋଇଥିଲା ତାହାମଧ୍ୟରୁ ପ୍ରମୁଖ କେତୋଟିର ନାମଧାମ ଅବଶ୍ୟ ଉଲ୍ଲେଖନୀୟ ।

ପରବର୍ତ୍ତୀକାଳର ଓଡ଼ିଆ ସାହିତ୍ୟ ଜଗତରେ 'ବ୍ୟାସକବି' ଔପାଧିକ ସଂଜ୍ଞାଦ୍ୱାରା ପରିଚିତ ଫକୀରମୋହନ ସେନାପତି ୧୮୬୮ରେ ପ୍ରକାଶ କଲେ ସାପ୍ତାହିକୀ 'ବାଲେଶ୍ୱର ସମ୍ବାଦବାହିକା' । କାଳିପଦ ବାନାର୍ଜୀଙ୍କ ସମ୍ପାଦନାରେ କଟକରୁ ବାହାରିଲା 'ଉତ୍କଳ ହିତୈଷିଣୀ' । ଏହାର ଚାରିପାଞ୍ଚ ବର୍ଷ ବ୍ୟବଧାନରେ ଉତ୍କଳକବି ମଧୁସୂଦନ ରାଓଙ୍କ 'ଧର୍ମବୋଧିନୀ' ନାମରେ ଏକ ଧର୍ମୀୟ ପତ୍ରିକା ପ୍ରକାଶ ପାଏ । ଏ ପତ୍ରିକାଟି ପ୍ରାୟ 'ବ୍ରାହ୍ମ' ଭାବଧାରାର ବାହାକ ଥିଲା । ୧୮୭୩ରେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସମ୍ପାଦକତ୍ୱରେ 'ଉତ୍କଳପୁତ୍ର'ଏବଂ ରାଜା ବୈକୁଣ୍ଠନାଥଙ୍କ ପୃଷ୍ଠପୋଷକତାରେ 'ଉତ୍କଳଦର୍ପଣ' ପତ୍ରିକା ଦୁଇଟି ଯଥାକ୍ରମେ କଟକ ଓ ବାଲେଶ୍ୱରରେ ଆତ୍ମପ୍ରକାଶ କଲେ । ତଦାନୀନ୍ତନ ଓଡ଼ିଶା ଗଡ଼ଜାତର ଦୁଇଜଣ ଦେଶପ୍ରାଣ ସ୍ୱନାମଧନ୍ୟ ରାଜା, ବାମଣ୍ଡାଧୀଶ୍ୱର ସାର୍ ବାସୁଦେବ ସୁଢ଼ଳଦେବ ଓ ମୟୂରଭଞ୍ଜାଧୀଶ୍ୱର ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କର ପ୍ରଗାଢ଼ ଉଦ୍ୟମ ତଥା ବିପୁଳ ଉତ୍ସାହ ଫଳରେ ଦେବଗଡ଼ରୁ 'ସମ୍ବଲପୁର ହିତୈଷିଣୀ' ଏବଂବାରିପଦାରୁ 'ଉତ୍କଳପ୍ରଭା' ପତ୍ରିକା ଦୁଇଟି ଯଥାକ୍ରମେ ୧୮୮୯ ଓ ୧୮୯୧ରେ ପ୍ରକାଶ ପାଇଲା । ସେକାଳରେ ଯେଉଁ ପ୍ରମୁଖ କବି ଲେଖକମାନେ ନିଜନିଜ ରଚନା ଦ୍ୱାରା ଏସବୁ ନାମକରା ଲୋକପ୍ରିୟ ପତ୍ରିକା ସମୂହ ମୁଖମଣ୍ଡନ କରୁଥିଲେ, ସେମାନଙ୍କ ମଧ୍ୟରେ ଫକୀରମୋହନ ସେନାପତି, କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ଗଙ୍ଗାଧର ମେହେର, ପଲ୍ଲୀକବି ନନ୍ଦକିଶୋର ବଳ, ନୀଳମଣି ବିଦ୍ୟାରତ୍ନ, ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ନନ୍ଦ, ଗୋପାଳଚନ୍ଦ୍ର ପ୍ରହରାଜ, ଜଗବନ୍ଧୁ ସିଂହ, ରତ୍ନାକର ପତି, ପଣ୍ଡିତ ଗୋପବନ୍ଧୁ ଦାସ ପ୍ରଭୃତିଙ୍କର ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ପତ୍ରପତ୍ରିକାର ଏହିପରି ଏକ ବିପୁଳ ସମ୍ଭାବନାପୂର୍ଣ୍ଣ ଜୟଯାତ୍ରା ଚାଲିଥିବାବେଳେ ସ୍ୱଚ୍ଛାତିସ୍ୱଚ୍ଛ ଦିଗ୍‌ବଳୟରେ ଦେଖା ଦେଇଥିଲା ଏକ ଅଭୂତପୂର୍ବ ଏବଂ ଅଶୋଭନୀୟ ବାଗ୍‌ଯୁଦ୍ଧର ଦାରୁଣ ଘନଘଟା । ସମସ୍ୟାଟି ପ୍ରଥମେ ମୁଣ୍ଡଟେକିଲା, ଉତ୍କଳଭାରତୀଙ୍କର ଅମର–ଅକ୍ଷରକୀର୍ତ୍ତିଭାସ୍ୱର ଅଦ୍ୱିତୀୟ ବରପୁତ୍ର ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟସୃଷ୍ଟିର ଅନୁଦାର ସମାଲୋଚନା ଏବଂ ରାଧାନାଥରାୟଙ୍କ ନବକାବ୍ୟ ଧାରାର ଅତ୍ୟୁଦାର ପ୍ରଶଂସାମୁଖର ଆଲୋଚନାରୁ । ଜାତୀୟ ରୁଚିବୋଧର ଦ୍ୱାହିଦେଇ କେତେକ ଆତ୍ମଶ୍ଳାଘୀ ସାହିତ୍ୟରଥୀ, ଭକ୍ତକବି ରାଓଙ୍କ ଭାଷାରେ– 'ରୁଚିଧ୍ୱଜୀ', କବିସମ୍ରାଟ ଭଞ୍ଜଙ୍କୁ ଏକାବେଳେ ଚାରିପାଞ୍ଚିରୁ ପୋଛି ଦେବାକୁ ବସିଲେ । ଓଡ଼ିଆ ସାରସ୍ୱତ ଚରିତ୍ରର ଏହି ଆତ୍ମଦ୍ରୋହିତା ବୈଶିଷ୍ଟ୍ୟର ଯେଉଁ ବିଷବୀଜ ସେହିକାଳୁ ପୋତାଯାଇଥିଲା, ଏବେ ତାହା ବିରାଟ ଦ୍ରୁମର ରୂପ ନେଇଛି । ହୁଏତ ବହୁଳ କଥିତ 'ଗୋଡ଼ଟଣା ଓଡ଼ିଆ' ପ୍ରବାଦବାକ୍ୟର ତାତ୍ପର୍ଯ୍ୟକୁ ପ୍ରତିପାଦନ କରି ପ୍ରଖ୍ୟାତ ଲେଖକ ଓ ଐତିହାସିକ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏକଦା ମନ୍ତବ୍ୟ ପ୍ରକାଶ କରିଥିଲେ ଯେ, "ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବହୁ ଟଣାଓଟରା, ଗୋଡ଼ଟଣା, ହଟଚମଟ, କାଉଯାଦି ବ୍ୟାପାର ଘଟିଛି । ଏହା ଯେ କେହି ଏକାଳ ଅନୁଭବୀ ଅବଶ୍ୟ ସ୍ୱୀକାର କରିବ । ସଂଗ୍ରାମର ସୂତ୍ରପାତ ହୁଏ ବାରିପଦାପ୍ରକାଶିତ 'ଉତ୍କଳପ୍ରଭା'ରୁ । ଭଞ୍ଜସାହିତ୍ୟର କଠୋର ସମାଲୋଚନାକୁ ବଳିଷ୍ଠତର ଯୁକ୍ତିଭିତ୍ତିରେ ଖଣ୍ଡନ କରାଯାଏ କଟକୀ 'ଉତ୍କଳଦୀପିକା'ରେ । ଘନଘଟାକୁ ଆହୁରି ଘନୀଭୂତ କରି 'ପ୍ରଭା–ଦୀପିକା' ଲଢ଼େଇରେ ଯୋଗଦେଲେ ଆଉ ଦୁଇଟି ନବାଗତ ଦୁର୍ଦ୍ଦାନ୍ତ ମସିଯୋଦ୍ଧା, ବାମଣ୍ଡାର 'ବିଜୁଳି' ଏବଂ କଟକର 'ଇନ୍ଦ୍ରଧନୁ' । ପ୍ରତିପକ୍ଷଙ୍କ ରଣହୁଂକାରରେ କମ୍ପମାନ ହୋଇଉଠିଲା ଉତ୍କଳ ସାରସ୍ୱତ ମଞ୍ଚ । 'ବିଜୁଳି'ର ତୀବ୍ର ଭଞ୍ଜ ବିରୋଧୀ ସମାଲୋଚନାର କଡ଼ା ଜବାବ ଦେଉଥାଏ ଭଞ୍ଜ ସମର୍ଥକ 'ଇନ୍ଦ୍ରଧନୁ' । ପରିସ୍ଥିତି ଏପରି ହେଲା ଯେ କ୍ରମେ ଉଭୟ ପତ୍ରିକାର ଅସହଣି ସଂଗ୍ରାମୀଗୋଷ୍ଠୀ ଉତ୍କଟ ଅସ୍ମିତାର ବଶବର୍ତ୍ତୀ ହୋଇ ସମସ୍ତ ସାହିତ୍ୟିକ ରୁଚିବୋଧ ଓ ସାମାଜିକ ଶିଷ୍ଟାଚାରର ସୀମା ଲଙ୍ଘନ କରି କୁତ୍ସିତ କୁରୁଚିପୂର୍ଣ୍ଣ ପନ୍ଥା ଧରିଲେ । ଅତ୍ୟନ୍ତ ବ୍ୟଥିତ ହେଲେ ସାହିତ୍ୟପ୍ରେମୀ ଉଦ୍‌ପାଠକ ଗୋଷ୍ଠୀ ସମେତ ସମ୍ଭ୍ରାନ୍ତ ଓ ମୂଲ୍ୟବୋଧ–ସଚେତନ ସୃଜନଶୀଳ ସାହିତ୍ୟିକ ସମାଜ । ଅସହ୍ୟ ମାନସିକ ବେଦନାଦଗ୍ଧ ଭକ୍ତକବି ମଧୁସୂଦନ ପ୍ରତିରୋଧୀ ଶକ୍ତିର ଅଗ୍ରଣୀ ଭୂମିକା ନେଇ ଲେଖିଲେ ନିହାତି ବ୍ୟଙ୍ଗବିଦ୍ରୂପାତ୍ମକ କବିତା 'ଭଣ୍ଡରସାୟନ କାବ୍ୟ' । 'ବିଜୁଳି' ଓ 'ଇନ୍ଦ୍ରଧନୁ' ଲଗାମଛଡ଼ା ମଲ୍ଲଯୋଦ୍ଧାଙ୍କ ଉପରେ ବର୍ଷିଲେ ପ୍ରଚଣ୍ଡ ଅଗ୍ନିକଣ୍ଟ ବାକ୍ୟବାଣ । ଲକ୍ଷ୍ୟ କରନ୍ତୁ ତା'ର ତୀବ୍ରତାକୁ :

"ଉତ୍କଳ ସାହିତ୍ୟ କ୍ଷେତ୍ରେ ଲାଗିଛି ସମର
ଅଦ୍ୟବ୍ୟାପୀ ଶବ୍ଦମୟ ମହାଭୟଙ୍କର ।
କୃଷ୍ଣଣେ ସୁରୁଚିଧ୍ୱଜୀ ଲାଲାଜୀ ଭୀଷଣ
ମନ୍ତ୍ରି ପରତନ୍ତ୍ର ରଣରଥୀ ବିଚକ୍ଷଣ ।
ଭଞ୍ଜକୀର୍ତ୍ତି ବିଭଞ୍ଜନ–ବ୍ୟାପାର ପ୍ରୟାସୀ
ସମର ପ୍ରାଙ୍ଗଣେ ରଙ୍ଗେ ଦେଖାଦେଲେ ଆସି ।

ଉଭୟ ପ୍ରତିପକ୍ଷଙ୍କ ସତର୍କବାଣୀର ସ୍ୱର ଥିଲା ଏହିପରି : (କବି ରାଓଙ୍କ ଭାଷାରେ)

ଇନ୍ଦ୍ରଧନୁ–

"ଆରେ ଲାଲା ରାୟ ଚେଲା !
ହୁଅ ସାବଧାନ,
ନୋହିଲେ ହୋଇବ ଲଙ୍କାକାଣ୍ଡର ବିଧାନ ।

ବିଜୁଳି–

"ଥାଉ ବୋଇଲେ ଲାଲାଜୀ, ଆରେ ଧନ୍ଦାସୁର,
ଅଲାବୁକ ମାନ–ଶିଷ୍ୟ ବିଷବୀଜାଙ୍କୁର ।"

ପ୍ରଚଳିତ 'ଲାଲାରାୟ' ହେଉଛନ୍ତି ଉକ୍ତ ସାହିତ୍ୟର ଉଗ୍ର ସମାଲୋଚକ-ଲାଲା ରାମନାରାୟଣ ରାୟ। ଉକ୍ତ ସମର୍ଥଙ୍କୁ 'ଧଳାସୁର' ଆକ୍ଷେପୋକ୍ତି କରାଯାଇଛି। ବାସ୍ତବତଃ ଓଡ଼ିଆ ସାହିତ୍ୟର ବିଳମ୍ବିତ ପ୍ରଗତି ପର୍ଯ୍ୟାୟରେ ଏପରି ଅସ୍ୱସ୍ତିକର ନଗ୍ନଯୁଦ୍ଧ ନିଶ୍ଚୟ ଏକ ବିଚ୍ଛେଦିତ ଅଧ୍ୟାୟ। ଯାହା ହେଉ, ବିଜୁଳି-ଇନ୍ଦ୍ରଧନୁର ଲଘୁରୂପ ପ୍ରଶମନ ପରେ ଓଡ଼ିଆ ପତ୍ରିକାରେ ବେଶ୍ ମାର୍ଜିତ ରୁଚିର ସାହିତ୍ୟ ଦେଖିବାକୁ ମିଳିଲା। ଶତାବ୍ଦୀର ଶେଷଭାଗରେ, ୧୮୯୭ ବେଳକୁ ବାଗ୍ମୀ ବିଶ୍ୱନାଥ କରଙ୍କ ବଳିଷ୍ଠ ସମ୍ପାଦନାରେ ପ୍ରକାଶିତ ମାସିକ 'ଉତ୍କଳ ସାହିତ୍ୟ' ଆଗାମୀ ବିଂଶତିର ଆଶାନୁରୂପ ପ୍ରଗତିବାର୍ତ୍ତା ବହନ କରି ଏକ ସମ୍ଭାବନାପୂର୍ଣ୍ଣ ନବଯୁଗର ସନ୍ଧାନ ଦେଲା, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ। କିନ୍ତୁ ଦୁର୍ଭାଗ୍ୟର କଥା, ଏହି ସମ୍ଭ୍ରାନ୍ତ ପତ୍ରିକାଟିର ଆୟୁ ପ୍ରାୟ ସାଢ଼େ ଦ୍ୱିଦଶନ୍ଧି ମଧ୍ୟରେ ସମାପ୍ତ ହୋଇଥିବା ଜଣାଯାଏ।

ବିଂଶ ଶତକର ଆରମ୍ଭ ବେଳକୁ ଓଡ଼ିଆ ସାହିତ୍ୟ ପତ୍ରିକା ଅତି ନଗଣ୍ୟ ସ୍ତରରୁ ଉଠିଉଠି ଯଥେଷ୍ଟ ଅଗ୍ରଗଣ୍ୟ ଭୂମିକା ଗ୍ରହଣ କରି ସାରିଥିଲା। ପ୍ରାୟଶଃ ୧୯୦୩ ମସିହାରୁ ଭିନ୍ନଭିନ୍ନ ଶାସନାଧୀନ ବିକ୍ଷିପ୍ତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ଦାନାବାନ୍ଧିବା ଆରମ୍ଭ କଲା। ଏ କ୍ଷେତ୍ରରେ ବଳିଷ୍ଠ ନେତୃତ୍ୱ ସୃଷ୍ଟି ନିମନ୍ତେ ପଡ଼ୋଶୀ ପ୍ରଦେଶମାନଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ପ୍ରତିପକ୍ଷ ସାଜି ତାଳଦେବାକୁ ଆରମ୍ଭ ସମ୍ବାଦପତ୍ରଠାରୁ ପ୍ରଶସ୍ତ ଗଣମାଧ୍ୟମ ନଥିଲା। ମାତ୍ର କତିପୟ ଲୋକପ୍ରିୟ ସାହିତ୍ୟପତ୍ର ସେ ଦିଗରେ ଅବଶ୍ୟ ଯତ୍‌କିଞ୍ଚିତ୍ ଭୂମିକା ତୁଲାଉଥିଲେ। ତତ୍‌କାଳୀନ ପ୍ରଭାବଶାଳୀ 'ଉତ୍କଳ ସାହିତ୍ୟ' ସଙ୍ଗେ ସ୍ୱରମିଳାଇବାକୁ 'ମୁକୁର', 'ସତ୍ୟବାଦୀ', 'ସହକାର', 'ନବଭାରତ', 'ଯୁଗବୀଣା' ଇତ୍ୟାଦି ପର୍ଯ୍ୟାୟକ୍ରମିକ ନବଜାତ ପତ୍ରପତ୍ରିକାବାହିନୀ ସଜାଇ ମୈତ୍ରପ୍ରତିଦ୍ୱନ୍ଦ୍ୱିତା କ୍ଷେତ୍ରକୁ ଆଗେଇ ଆସିଥିଲେ ସର୍ବଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ଲକ୍ଷ୍ମୀନାରାୟଣ ସାହୁ, ବାଳକୃଷ୍ଣ କର, ନୀଳକଣ୍ଠ ଦାଶ ଓ ସବୁଜ ସାହିତ୍ୟିକ ଗୋଷ୍ଠୀ। ସେ ସମୟକୁ ସାହିତ୍ୟ ବିଭାଗୀକରଣ ପ୍ରକ୍ରିୟାର ରୂପରେଖ ସ୍ପଷ୍ଟ ହୋଇଯାଇଥାଏ। କେହି ଧର୍ମ, କେହି ସଭ୍ୟତାସଂସ୍କୃତି, କେହି ଶିକ୍ଷା-ସ୍ୱାସ୍ଥ୍ୟ-ବିଜ୍ଞାନ, କେହି ରାଜନୈତିକ ବିପ୍ଳବ, କେହି ସମାଜ ସଂସ୍କାର, ଆଉ କେହି ଦେଶମିତ୍ରଣର ବାର୍ତ୍ତା ଶୁଣାଉଛନ୍ତି। ନାରୀ ପ୍ରଗତି, ଶିଶୁ ସାହିତ୍ୟ ବିକାଶର ସ୍ୱର ମଧ୍ୟ ଉଠିଛି। ସର୍ବୋପରି ଦୃଶ୍ୟପଟକୁ ଆସିଛି ଏକ ଅଭିନବ ବିଭାଗ 'ରମ୍ୟରଚନା' ବା ବ୍ୟଙ୍ଗ ସାହିତ୍ୟ। ସାମୂହିକ ସ୍ରୋତଧାରାରେ ଏହାର ଯତ୍‌କିଞ୍ଚିତ୍ ସତ୍ତା ଅବଶ୍ୟ ଥିଲା, ପରନ୍ତୁ ଗଣଜାଗତ ସ୍ୱତନ୍ତ୍ର ପନ୍ଥା ନଥିଲା। ପ୍ରଥମେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ବ୍ୟକ୍ତିଗତ ଉଦ୍ୟମରେ, ୧୯୩୭ ମସିହାରେ ଉତ୍କଳରୁ ପ୍ରକାଶିତ 'ଡଗର' ସ୍ୱତନ୍ତ୍ର ବ୍ୟଙ୍ଗପତ୍ରର ଭିତ୍ତି ପକାଇଲା। ପରେ ପରେ ଅନନ୍ୟ ପ୍ରତିଭାଧର ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା' ଏବଂ ସପ୍ତମ ଦଶକରେ ପଣ୍ଡିତ ଅଚ୍ୟୁତାନନ୍ଦ କରଙ୍କ 'ଦୁର୍ମୁଖ' ମୁଖ୍ୟତଃ ଯୋଗ୍ୟ ଦାୟାଦୀୟ ଭୂମିକା ନିଭାଇ ବ୍ୟଙ୍ଗବିଦ୍ରୂପାତ୍ମକ ବୈପ୍ଳବିକ ସ୍ରୋତଧାରାକୁ ଅଧିକ ସଂଯୋଜିତ କରିଅଛନ୍ତି। ଏ ଦିଗରେ ଅନ୍ୟାନ୍ୟ କେତେକ ଛୋଟ ବଡ଼ ପୁସ୍ତକ, ସାମୟିକ ପତ୍ରିକାର କିଛି କିଛି ସାର୍ଥକ ଅବଦାନକୁ ଅବଶ୍ୟ ଅସ୍ୱୀକାର କରାଯାଇ ପାରିବ ନାହିଁ। ସମ୍ପ୍ରତି ଧର୍ମ-ସଂସ୍କୃତି-ରାଜନୀତି ବାଣିଜ୍ୟିକ- ବୈଜ୍ଞାନିକ- ଆଧାରଭିତ୍ତିକ ପତ୍ରପତ୍ରିକାର ସଂଖ୍ୟାକରଣ ଓ ମୂଲ୍ୟାୟନ ଆଦୌ ସହଜସାଧ୍ୟ ବ୍ୟାପାର ନୁହେଁ। ପୁରାତନ-ନୂତନ-ରୁଚିବୋଧଜନିତ ସଂଘର୍ଷର କଳନା କରିବା ବି ଦୁଃସାଧ୍ୟ, ଅଧିକନ୍ତୁ ବିବାଦୀୟ ମଧ୍ୟ। ଏବେକାର ଏକ ବଡ଼ ଆବଶ୍ୟକତା, ନିର୍ଦ୍ଦିଷ୍ଟ ନୀତିଗତ ବା ବୃତ୍ତିଗତ ପତ୍ରିକାକୁ ଛାଡ଼ି, ସାଧାରଣ ସାହିତ୍ୟ ପତ୍ରିକାରେ ବିଭିନ୍ନ ଶ୍ରେଣୀର ପାଠକଙ୍କ ପାଇଁ ଖୋରାକ ଯୋଗାଇବା। ଏଭଳି ପତ୍ରିକା କ୍ୱଚିତ୍ ଦୃଷ୍ଟିରେ ପଡ଼େ। ବର୍ତ୍ତ ରାଜ୍ୟସରକାରଙ୍କ ଦ୍ୱାରା ପ୍ରକାଶିତ ଓଡ଼ିଆ ମାସିକ 'ଉତ୍କଳ ପ୍ରସଙ୍ଗ'କୁ ଏକ ସାର୍ବଜନୀନ ଆଦର୍ଶ ପତ୍ରିକା ଭାବରେ ନିର୍ଦ୍ଦ୍ୱନ୍ଦ୍ୱରେ ଗ୍ରହଣ କରାଯାଇ ପାରେ। ସରକାରୀ କୃତିକଳାପର ବାର୍ତ୍ତାବାହିକତା ଏହାର ମୌଳିକ ଭିତ୍ତି ହେଲେ ହେଁ, ତାହାର ସାହିତ୍ୟ ରୂପତାର ଚମତ୍କାରିତା ଯଥେଷ୍ଟ ଆକର୍ଷଣୀୟ। ଏହାର ବୈଶିଷ୍ଟ୍ୟ ହେଉଛି, ସାହିତ୍ୟର ସବୁ ବିଭାଗକୁ ସ୍ପର୍ଶ କରି ସବୁ ସ୍ତରର ଲେଖକ ଲେଖିବାକୁ ନିଯୋଜିବା ସହିତ ସବୁ ଶ୍ରେଣୀର ସର୍ବସାଧାରଣଙ୍କ ପାଇଁ ଉପଯୋଗୀ ପାଠକୀୟ ଖୋରାକ ଯୋଗାଇବା ଲକ୍ଷ୍ୟ ଚରିତାର୍ଥ କରିବାକୁ ଯଥାରୋଚନାନ୍ତି ପ୍ରୟାସ କରିଥାଏ। ଅପରନ୍ତୁ ରାଜ୍ୟର କୋଣେ ଅନୁକୋଣେ ଏହାର ବହୁଳ ପ୍ରସାର ବ୍ୟବସ୍ଥାରେ ଯେଉଁ ଶିଥିଳତା ଅନୁଭୂତ ହୁଏ, ତାହା ଆଶୁ ଦୂରୀକରଣ କରାଯିବା ନିତାନ୍ତ ଆବଶ୍ୟକ। ସ୍ୱତନ୍ତ୍ରଭାବେ 'ଉତ୍କଳ ପ୍ରସଙ୍ଗ'ର ପ୍ରଶଂସନୀୟ ଭୂମିକା ଏକ ବିଶଦ ଆଲୋଚନାର ଅପେକ୍ଷା ରଖେ।

ଉପସଂହାରରେ ଏତିକି କୁହାଯାଇପାରେ, ଆମର ପତ୍ରପତ୍ରିକାର ପରମ୍ପରା ଅପେକ୍ଷାକୃତ ଅର୍ବାଚୀନ ଏବଂ ପ୍ରସାର କ୍ଷେତ୍ର ଖୁବ୍ ସୀମିତ ହେଲେ ହେଁ ସାମ୍ପ୍ରତିକ ସ୍ଥିତି ଯେ ବେଶ୍ ଆଶାଦୀପ୍ତିଆ, ଏହା ଅନସ୍ୱୀକାର୍ଯ୍ୟ। ପ୍ରାୟ ଶୁଣିବାକୁ ମିଳେ, ଓଡ଼ିଆ ପାଠକ ମଧ୍ୟରେ ପତ୍ରିକା କିଣି ପଢ଼ିବାର ଆଗ୍ରହ ବହୁତ ଊଣା। ଏ ଅଭିଯୋଗ ଆଂଶିକ ସତ୍ୟ ହୋଇପାରେ, କିନ୍ତୁ ସମ୍ପୂର୍ଣ୍ଣ ନୁହେଁ। କେହି ନିରପେକ୍ଷ ଅନୁସନ୍ଧାନୀ ଏହାର କାରଣ ବିଷୟରେ ଆମ ନିର୍ଭୀକ ମତ ପ୍ରକାଶ କରିବାର ଦେଖାଯାଏ ନାହିଁ। ଆମ ରାଜ୍ୟରେ ବାହାର ରାଜ୍ୟର ପତ୍ରପତ୍ରିକା ଯେତେ ଚାଲେ, ଓଡ଼ିଆ ପତ୍ରିକା ବୋଧହୁଏ ସେତେ ଚାଲେ ନାହିଁ କାହିଁକି! କାରଣ ସନ୍ଧାନିବା ନିହାତି କଷ୍ଟ ନୁହେଁ। ଯଦି ପଚରାଯାଏ, ଓଡ଼ିଶାରେ ଉପଯୁକ୍ତ ମାନର (Standard) ପତ୍ରିକା କେତୋଟି ଅଛି ଏବଂ ତା'ର ପ୍ରକାଶ ସଂଖ୍ୟା କେତେ, ଉତ୍ତର ହେବ ଖୁବ୍ ନୈରାଶ୍ୟଜନକ। ଲେଖକଙ୍କୁ ଅନୁରୋଧ ଆସେ, ଦୁଇଟି ପୃଷ୍ଠାର 'ଛୋଟ' ଲେଖାଟିଏ ପଠାଇବେ ଏବଂ ପ୍ରକାଶ କରିବା ନକରିବା ସମ୍ପାଦକଙ୍କ ଇଚ୍ଛାଧୀନ-ଇତ୍ୟାଦି ସର୍ତ୍ତସାପେକ୍ଷ। ଏପରି ପରିସ୍ଥିତିରେ କୌଣସି ପ୍ରତିଷ୍ଠିତ ଲେଖକଙ୍କଠାରୁ ଆଶାନୁରୂପ ମାନର ଲେଖାଟିଏ ଆଶା କରାଯାଇ ପାରେକି? ଫଳତଃ ପତ୍ରିକାଗୁଡ଼ିକ ହୋଇଯାଉଛି ଏକପ୍ରକାର ଗୋଷ୍ଠୀଗତ, ଧରାଧରି ଖୋସାମତି, ମୁହଁଦେଖା, ପ୍ରିୟାପ୍ରୀତିର ବ୍ୟାପାର।

---

ସ୍ନେହ ନିବାସ,
୪୨୪/ସହୀଦନଗର, ଭୁବନେଶ୍ୱର-୭

# ଓଡ଼ିଶାରେ ଅରଣ୍ୟ ସମ୍ପଦ

ଶ୍ରୀ ବିଜୟ କେତନ ପଟ୍ଟନାୟକ

ଭାରତ ଉପ ମହାଦେଶର ପୂର୍ବ ଉପକୂଳରେ ଅବସ୍ଥିତ ଓଡ଼ିଶା; ତା'ର ସ୍ୱତନ୍ତ୍ର ଭୌଗୋଳିକ ଅବସ୍ଥିତି, ପ୍ରାକୃତିକ ପରିବେଷ୍ଟନୀ, ଦିଗନ୍ତ ବିସ୍ତାରୀ ପାହାଡ଼, ପର୍ବତ, ଉପତ୍ୟକା; ନଦୀ, ନାଳ, ଅବବାହିକା ଏବଂ ୪୮୦ କିଲୋମିଟର ପରିବ୍ୟାପ୍ତ ସମୁଦ୍ର ଉପକୂଳ ଯୋଗୁଁ ବିବିଧ ବର୍ଣ୍ଣାଢ୍ୟ ତଥା ଆକର୍ଷଣୀୟ ଅରଣ୍ୟ ସମ୍ପଦରେ ପରିପୂର୍ଣ୍ଣ । ପୂର୍ବଘାଟ ପର୍ବତମାଳା ଦକ୍ଷିଣରୁ ଉତ୍ତରକୁ ବିସ୍ତାରିତ ହୋଇ ବିହାରର ଛୋଟନାଗପୁର ମାଳ ଅଞ୍ଚଳରେ ମିଶିଯାଇଛି । ଏହି ପ୍ରାକୃତିକ ବିବିଧତା, ଓଡ଼ିଶାର ଅରଣ୍ୟରେ ଥିବା ଉଦ୍ଭିଦ ତଥା ପ୍ରାଣୀ ସମ୍ପଦକୁ ସମୃଦ୍ଧ କରିଛି । ଅରଣ୍ୟ ସମ୍ପଦରେ ପରିପୂର୍ଣ୍ଣ ଓଡ଼ିଶା, ଦେଶର ଅନ୍ୟତମ ପ୍ରଦେଶ । ଆୟତନ ଦୃଷ୍ଟିରୁ ସମଗ୍ର ଦେଶର ଶତକଡ଼ା ୭·୪୧ ଭାଗ ଜଙ୍ଗଲ ଆମ ରାଜ୍ୟରେ ଅବସ୍ଥିତ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଘୋଷିତ ହୋଇଥିଲା । କିନ୍ତୁ ଦେଶ ସ୍ୱାଧୀନ ହେବାର ପରବର୍ଷ ୧୯୪୮ ମସିହାରେ ୨୫ଟି ଗଡ଼ଜାତ ରାଜ୍ୟର ମିଶ୍ରଣ ହେଲା ପରେହିଁ ଓଡ଼ିଶାରେ ଜଙ୍ଗଲର ଆୟତନ ଆଶାତୀତ ବୃଦ୍ଧି ପାଇଲା । କେବଳ ସଂରକ୍ଷିତ ଜଙ୍ଗଲ ଓ ଚିହ୍ନଟ ହୋଇଥିବା ରକ୍ଷିତ ଜଙ୍ଗଲର ଆୟତନ ୭,୪୪୩ ବର୍ଗ କିଲୋମିଟରରୁ ୨୭,୩୩୨ ବର୍ଗ କିଲୋମିଟରକୁ ବୃଦ୍ଧି ପାଇଲା । ପରେ ପରେ ୧୯୫୨ ମସିହାରେ ଜମିଦାରୀ ପ୍ରଥା ଉଚ୍ଛେଦ ହେବା ପରେ ଅଞ୍ଚଳ ଶାସନାଧୀନରେ ଥିବା ଅଧିକରୁ ଅଧିକ ଜଙ୍ଗଲ ୧୯୫୭–୫୮ ମସିହାରେ ରାଜ୍ୟ ଜଙ୍ଗଲ ବିଭାଗ ନିୟନ୍ତ୍ରଣକୁ ଆସିଲା । ଏହି ଉପାୟରେ ଆସିଥିବା ପୂର୍ବ ଜମିଦାରୀ ଜଙ୍ଗଲର ଆୟତନ ପ୍ରାୟ ୨୦,୦୦୦ ବର୍ଗ କିଲୋମିଟର ହେବ । ଏହିପରିଭାବେ ଗଡ଼ଜାତ ଜଙ୍ଗଲ, ଜମିଦାରୀ ଜଙ୍ଗଲକୁ ମିଶେଇ, ଷଷ୍ଠ ଦଶକରେ ଆମ ରାଜ୍ୟରେ ଥିବା ଜଙ୍ଗଲର ଆୟତନ ୬୭,୫୬୧ ବର୍ଗ କିଲୋମିଟର ଥିଲା । ଯାହାକି ରାଜ୍ୟର ମୋଟ ଭୌଗୋଳିକ ଆୟତନର ଶତକଡ଼ା ୪୩ ଭାଗ । କିନ୍ତୁ ବିଗତ ଦଶକରେ ରାଜ୍ୟ ବନ ବିଭାଗ ରେକର୍ଡ଼ରେ ଜଙ୍ଗଲର ପରିମାଣ ୫୭,୧୮୪ ବର୍ଗ କିଲୋମିଟର; ଅର୍ଥାତ୍ ଭୌଗୋଳିକ ଆୟତନର ଶତକଡ଼ା ୩୬·୭୩ ଭାଗ ଦର୍ଶାଯାଇଛି ।

ତନ୍ମଧ୍ୟରୁ: ସଂରକ୍ଷିତ ଜଙ୍ଗଲ (Reserve Forest) –୨୭,୦୮୭ ବର୍ଗ କି: ମି:

ରକ୍ଷିତ ଜଙ୍ଗଲ (Protected Forest).

(କ) ଚିହ୍ନଟ ହୋଇଥିବା ରକ୍ଷିତ ଜଙ୍ଗଲ –୧୬,୧୧୩ ବର୍ଗ କି: ମି:

(ଖ) ଚିହ୍ନଟ ହୋଇନଥିବା ରକ୍ଷିତ ଜଙ୍ଗଲ –୧୩,୯୬୭ ବର୍ଗ କି: ମି:

ଅନ୍ୟାନ୍ୟ ଜଙ୍ଗଲ (Unclassed Forest) –୧୭ ବର୍ଗ କି: ମି:

---

ମୋଟ ଜଙ୍ଗଲ–୫୭,୧୮୪ ବର୍ଗ କି: ମି:

ଭାରତୀୟ ଜଙ୍ଗଲ ସର୍ବେକ୍ଷଣ ବିଭାଗ, ସାଟେଲାଇଟ୍ ଫଟୋଚିତ୍ର ଅନୁଶୀଳନରୁ ପ୍ରତି ଦୁଇବର୍ଷ ବ୍ୟବଧାନରେ ବିଭିନ୍ନ ରାଜ୍ୟର ଜଙ୍ଗଲର ଆୟତନ ସମ୍ପର୍କରେ ତଥ୍ୟ ପ୍ରକାଶ କରି ଆସୁଛନ୍ତି । ୧୯୯୭ ମସିହାରେ ପ୍ରକାଶିତ ସର୍ବଶେଷ ସର୍ଭେ ରିପୋର୍ଟ ମୁତାବକ, ସମ୍ପ୍ରତି ଆମ ରାଜ୍ୟରେ ୪୬,୯୪୧ ବର୍ଗ କିଲୋମିଟର ଅଞ୍ଚଳରେ ଜଙ୍ଗଲ ରହିଛି ।

ତନ୍ମଧ୍ୟରୁ: ଘଞ୍ଚ ଜଙ୍ଗଲ (ଶତକଡ଼ା ୪୦ ଭାଗରୁ ଅଧିକ ସାନ୍ଦ୍ରତା)–୨୬,୧୦୧ ବର୍ଗ କି: ମି:

ଖୋଲା ଜଙ୍ଗଲ (ଶତକଡ଼ା ୧୦ରୁ ୪୦ ଭାଗ ସାନ୍ଦ୍ରତା)–୨୦,୬୨୯ ବର୍ଗ କି: ମି:

ଲୁଣା ଜଙ୍ଗଲ – ୨୧୧ ବର୍ଗ କି: ମି:

---

ମୋଟ ଜଙ୍ଗଲର ଆୟତନ – ୪୬,୯୪୧ ବର୍ଗ କି: ମି:

ଭାରତରେ ସମଗ୍ର ଭୂଭାଗର ଶତକଡ଼ା ୧୯·୨୭ ଭାଗ ଜଙ୍ଗଲରେ ଆଚ୍ଛାଦିତ ଥିଲାବେଳେ, ଓଡ଼ିଶାରେ ଏହାର ପରିମାଣ ୩୦·୧ ଭାଗ । କେବଳ ଉତ୍ତର ପୂର୍ବାଞ୍ଚଳ ରାଜ୍ୟ ଯଥା– ଅରୁଣାଚଳ ପ୍ରଦେଶ, ନାଗାଲାଣ୍ଡ, ମିଜୋରାମ, ମେଘାଳୟ, ମଣିପୁର, ତ୍ରିପୁରା ପ୍ରଭୃତିକୁ ଛାଡ଼ିଦେଲେ, ଅରଣ୍ୟ ସମ୍ପଦ ଦୃଷ୍ଟିରୁ ଓଡ଼ିଶା ଅନ୍ୟମାନଙ୍କ ଅପେକ୍ଷା ଅଧିକ, ବିତ୍ତଶାଳୀ । ଓଡ଼ିଶା ଦିନେ ଆପଣାର ନିରନ୍ତ୍ର, ନିବୁଜ ଓ ଘଞ୍ଚ ଜଙ୍ଗଲ ପାଇଁ ପ୍ରସିଦ୍ଧ ଥିଲା । ଏବେ ଘଞ୍ଚ ଜଙ୍ଗଲର ଆୟତନ ମାତ୍ର ଶତକଡ଼ା ୧୬ରୁ ୧୭ ଭାଗ ।

୧୯୯୫ ମସିହାର ସର୍ଭେ ରିପୋର୍ଟ ସହ ୧୯୯୭ ରିପୋର୍ଟକୁ ତୁଳନା କଲେ ଜଣାଯାଏ, ଦୁଇ ବର୍ଷ ଭିତରେ ୧୬୬ ବର୍ଗ

କିଲୋମିଟର ପରିମିତ ଜଙ୍ଗଲ ଆମ ରାଜ୍ୟରେ ହ୍ରାସ ପାଇଛି । ଘଞ୍ଚ ଜଙ୍ଗଲର ଆୟତନ ୧,୦୬୨ ବର୍ଗ କି.ମି. କମିଯାଇଥିବା ବେଳେ ଖୋଲା ଜଙ୍ଗଲ ଓ ଲୁଣା ଜଙ୍ଗଲର ଆୟତନ ଯଥାକ୍ରମେ ୮୮୦ ଓ ୧୬ ବର୍ଗ କି.ମି. ବଢ଼ିଛି । ଯେଉଁ ଜିଲ୍ଲାମାନଙ୍କରେ ଜଙ୍ଗଲର ଆୟତନରେ ଅଧିକ କ୍ଷୟ ଘଟିଛି ସେଗୁଡ଼ିକ ହେଲା ମୟୂରଭଞ୍ଜ, କେଉଁଝର, ମାଲକାନ୍‌ଗିରି ଓ କୋରାପୁଟ । ସମ୍ପ୍ରତି ଆୟତନ ଦୃଷ୍ଟିରୁ ଫୁଲବାଣୀ ଜିଲ୍ଲା ଓ ତା' ତଳକୁ ଗଡ଼ଜାତ ଜିଲ୍ଲାରେ ଅଧିକ ଜଙ୍ଗଲ ରହିଛି । ବିଗତ କିଛି ବର୍ଷ ଧରି କ୍ରମାଗତ ଭାବେ ଆଦିବାସୀ ଅଧ୍ୟୁଷିତ ଜିଲ୍ଲାମାନଙ୍କରେ ଜଙ୍ଗଲର ଆୟତନ ଯେପରି ବିପଜ୍ଜନକ ଭାବେ ହ୍ରାସ ପାଇ ଚାଲିଛି, ତାହା ନିଶ୍ଚିତ ଭାବେ ଉଦ୍‌ବେଗଜନକ ।

ଓଡ଼ିଶାର ଅରଣ୍ୟ ମୁଖ୍ୟତଃ କ୍ରାନ୍ତୀୟ ବା ଗ୍ରୀଷ୍ମମଣ୍ଡଳୀୟ । ଉଦ୍ଭିଦ ଜଗତର ସ୍ଥିତି ଓ ପ୍ରକୃତିକୁ ଲକ୍ଷ୍ୟ ରଖି ଆମର ଅରଣ୍ୟ ସମ୍ପଦକୁ ମୁଖ୍ୟତଃ ଚାରୋଟି .ଉପବିଭାଗରେ ବିଭକ୍ତ କରାଯାଇପାରେ, ସେଗୁଡ଼ିକ ହେଉଛି :

(୧) ଶୁଷ୍କ ଚିରହରିତ୍ ଅରଣ୍ୟ

(୨) ଆର୍ଦ୍ର ପତ୍ରଝଡ଼ା ଜଙ୍ଗଲ

(୩) ଶୁଷ୍କ ପତ୍ରଝଡ଼ା ଜଙ୍ଗଲ

(୪) ସନ୍ତସନ୍ତିଆ ଜୁଆରିଆ ଜଙ୍ଗଲ ବା ଲୁଣା ଜଙ୍ଗଲ

ଏଥିମଧ୍ୟରୁ ସନ୍ତସନ୍ତିଆ ଜୁଆରିଆ ଜଙ୍ଗଲ ବା ଲୁଣା ଜଙ୍ଗଲ ଯାହାକି ହେନ୍ତାଳ ବନ ନାମରେ ପରିଚିତ, ତାହା ଅନ୍ୟ ତିନି ପ୍ରକାରର ଜଙ୍ଗଲଠାରୁ ସମ୍ପୂର୍ଣ୍ଣ ଭିନ୍ନ । କାରଣ ଅନ୍ୟ ତିନି ଜାତୀୟ ଜଙ୍ଗଲରେ ପ୍ରଧାନ ବା ମୁଖ୍ୟ ଗଛ ଓ ତା'ର ସହଯୋଗୀ ଗଛ ପ୍ରାୟ ଏକା ପ୍ରକାରର । ରାଜ୍ୟରେ ଥିବା ଜଙ୍ଗଲର ମୁଖ୍ୟ ଭାଗ ବା ଅଧିକାଂଶ ଶୁଷ୍କ ପତ୍ରଝଡ଼ା ଜଙ୍ଗଲ । ତା'ପଛକୁ ଆର୍ଦ୍ର ପତ୍ରଝଡ଼ା ଜଙ୍ଗଲ । ଚିରହରିତ୍ ଅରଣ୍ୟ ଓ ସନ୍ତସନ୍ତିଆ ଜୁଆରିଆ ଜଙ୍ଗଲର ପରିମାଣ, ଉପରୋକ୍ତ ଦୁଇ ପ୍ରକାରର ଜଙ୍ଗଲ ତୁଳନାରେ ଯଥେଷ୍ଟ କମ୍ ।

ଓଡ଼ିଶାର ଜଙ୍ଗଲରୁ ମିଳୁଥିବା କାଷ୍ଠ ସମ୍ପଦର ମୁଖ୍ୟ ଆକର୍ଷଣ ହେଉଛି ଶାଳଗଛ । ଶତକଡ଼ା ୩୩ ଭାଗରୁ ଅଧିକ ଜଙ୍ଗଲରେ ଶାଳହିଁ ମୁଖ୍ୟ ଓ ପ୍ରଧାନ ଗଛ । କେବଳ ଉପକୂଳବର୍ତ୍ତୀ ଅଞ୍ଚଳ ଓ ଲୁଣା, ସନ୍ତସନ୍ତିଆ ଅଞ୍ଚଳକୁ ଛାଡ଼ି ଦେଲେ ଅନ୍ୟ ସବୁ ଜଙ୍ଗଲରେ ଉଣା ଅଧିକେ ଶାଳ ଗଛ ଦେଖିବାକୁ ମିଳେ । ଆମ ଜଙ୍ଗଲର ଅନ୍ୟ ମୂଲ୍ୟବାନ ଗଛଗୁଡ଼ିକ ହେଲା ପିଆଶାଳ, ବାହାଣ, ଅସନ, କୁରୁମ, ଶିଶୁ, କସି, କେନ୍ଦୁ, ହଳଦୁ, ଧଉଡ଼ା ଓ କଙ୍ଗଡ଼ା । ଓଡ଼ିଶାର ଅରଣ୍ୟରେ ମିଳୁଥିବା ଅନ୍ୟତମ ଗଛ ହେଉଛି ଶାଗୁଆନ୍ । ଦକ୍ଷିଣ ଓଡ଼ିଶାରେ ଅର୍ଥାତ୍ ମାଲକାନଗିରି, ଝରିଗାଁ, ଉମରକୋଟ (ନବରଙ୍ଗପୁର), ଖଡ଼ିଆଳ (ନୂଆପଡ଼ା) ଓ ବଲାଙ୍ଗୀର ଅଞ୍ଚଳରେ ସାଗୁଆନ୍ ଜଙ୍ଗଲ ଆପେ ଆପେ ଅର୍ଥାତ୍ ପ୍ରାକୃତିକ ଉପାୟରେ ସୃଷ୍ଟି ହୋଇଥାଏ । ଦକ୍ଷିଣ ଓଡ଼ିଶାହିଁ ବାସ୍ତବରେ ଭାରତୀୟ ଜଙ୍ଗଲରେ ଦେଖିବାକୁ ମିଳୁଥିବା ଦୁଇଟି ପ୍ରଧାନ ଗଛ ଶାଳ ଓ ସାଗୁଆନ୍‌ର ମିଳନ ସ୍ଥଳ । ଦକ୍ଷିଣ ଭାରତରେ ଶାଳ ଗଛ ଦେଖିବାକୁ ମିଳେନାହିଁ । ସେହିପରି ଏହାର ଉତ୍ତରକୁ ମଧ୍ୟ ପ୍ରାକୃତିକ ସାଗୁଆନ୍ ଜଙ୍ଗଲ ଦେଖାଯାଏ ନାହିଁ : ଯଦିଓ ଏକାଧିକ ସୁବିସ୍ତୃତ ସାଗୁଆନ୍ ପ୍ଲାଣ୍ଟେସନ୍ ହିମାଳୟର ପାଦଦେଶଯାଏଁ ଦେଖିବାକୁ ମିଳେ ।

ଲଘୁ ବନଜାତ ଦ୍ରବ୍ୟରେ ପରିଗଣିତ ବାଉଁଶ ମଧ୍ୟ ଓଡ଼ିଶାର ଜଙ୍ଗଲରେ ପ୍ରଚୁର ପରିମାଣରେ ମିଳିଥାଏ । ଅପେକ୍ଷାକୃତ ଶୁଷ୍କ ଅଞ୍ଚଳରେ ଶାଳିଆ ଓ ସୁନ୍ଦରକଣି ବାଉଁଶ ମିଳୁଥିବାବେଳେ, ଆର୍ଦ୍ର ପତ୍ରଝଡ଼ା ଜଙ୍ଗଲରେ ବା ସ୍ୱଳ୍ପ ଚିରହରିତ୍ ଜାତୀୟ ଅରଣ୍ୟରେ ଡାବା ବାଉଁଶ ମିଳେ । ବିଶେଷ କରି ଜଙ୍ଗଲରେ ଶାଳ ଓ ସାଗୁଆନ୍ ଗଛ ସହ ସହଯୋଗୀ ଗଛ ଭାବେ ବାଉଁଶ ଦେଖିବାକୁ ମିଳେ । ଉପକୂଳବର୍ତ୍ତୀ ଅଞ୍ଚଳରେ ଝାଉଁ ଜଙ୍ଗଲ ବହୁଳ ଭାବେ ଦେଖାଯାଏ । ଜାଳେଣୀ ହିସାବରେ ବ୍ୟବହୃତ ହେଉଥିବା ଏହି ଗଛଟି ୮/୧୦ ବର୍ଷ ଭିତରେ ଅମଳକ୍ଷମ ହେଉଥିବାରୁ ଯଥେଷ୍ଟ ଲାଭଦାୟକ ହୋଇଥାଏ । ଉପକୂଳବର୍ତ୍ତୀ ଅଞ୍ଚଳର ଚାଷୀମାନେ ପ୍ରାୟତଃ ବାଲିଆ ଜମିରେ ଝାଉଁ ଗଛ ଚାଷ କରିଥାନ୍ତି । ଏହି ପ୍ରକାର ଜଙ୍ଗଲରେ ଦେଖିବାକୁ ମିଳୁଥିବା ଅନ୍ୟ ଗଛ ହେଲା କରଞ୍ଜ ଓ ପୋଲାଙ୍ଗ । ଏହି ଗଛର ମଞ୍ଜିରୁ ତେଲ ନିଷ୍କାସନ କରାଯାଇଥାଏ । ଜଙ୍ଗଲ ବିଭାଗ ତରଫରୁ ସଂକଳନ କରାଯାଇଥିବା, ଏକ ରିପୋର୍ଟରୁ ଜଣାପଡେ ଆମ ରାଜ୍ୟର ଅରଣ୍ୟରେ ୧୬,୯୪୩ ବର୍ଗ କି.ମି. ପରିମିତ ଶାଳ ଜଙ୍ଗଲ ରହିଛି ୨,୦୩୦ ବର୍ଗ କି.ମି. ଅଞ୍ଚଳରେ ସାଗୁଆନ୍ ଜଙ୍ଗଲ : ୨୧,୦୨୪ ବର୍ଗ କି.ମି. ଅଞ୍ଚଳରେ ମିଶ୍ରିତ ଜଙ୍ଗଲ ରହିଛି । ଶାଳ ଓ ସାଗୁଆନ୍ ଗଛ ସହ ମିଶି ରହିଥିବା ଜଙ୍ଗଲର ଆୟତନ ପ୍ରାୟ ୧୭,୬୯୪ ବର୍ଗ କି.ମି. । ବିଗତ କିଛି ବର୍ଷ ହେଲା ରାଜ୍ୟର ବାଉଁଶ ଉତ୍ପାଦନ ପ୍ରାୟ ୨ ଲକ୍ଷରୁ ୨ ଲକ୍ଷ ୫୦ ହଜାର ସେଲ୍ ୟୁନିଟ୍‌ରେ (୧ ସେଲ୍ ୟୁନିଟ୍-୨୪୦୦ ମିଟର ଲମ୍ବ ଶାଳିଆ ବାଉଁଶ) ସ୍ଥିର ରହିଛି ।

ରାଜ୍ୟରେ ଜଙ୍ଗଲ ସମ୍ପଦର ଦ୍ରୁତ ଅବକ୍ଷୟକୁ ଲକ୍ଷ୍ୟ ରଖି, ରାଜ୍ୟ ସରକାର ୧୯୯୮ ମସିହାରେ ପ୍ରାକ୍ତନ ବଲାଙ୍ଗୀର, କଳାହାଣ୍ଡି ଓ ଫୁଲବାଣୀ ଭଳି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାମାନଙ୍କରେ ବ୍ୟବସାୟିକ ଭିତ୍ତିରେ କାଠକଟା ବନ୍ଦପାଇଁ ନିର୍ଦ୍ଦେଶ ଦେଇଥିଲେ । ପରେ ପରେ ୧୯୯୦ ମସିହାରେ ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ମଧ୍ୟ ବ୍ୟବସାୟିକ ଭିତ୍ତିରେ କାଠ ଅମଳ ବନ୍ଦ କରାଗଲା । ପୁନଶ୍ଚ ଜଙ୍ଗଲ ସଂରକ୍ଷଣ ଉଦ୍ଦେଶ୍ୟରେ ୧୯୯୨ ମସିହାରେ ସାରା ଓଡ଼ିଶାରେ କଞ୍ଚା ବା ଠିଆ ହୋଇଥିବା ଗଛ କାଟିବା ନିଷିଦ୍ଧ କରିଦିଆଗଲା । କେବଳ ବନ୍ୟା, ବାତ୍ୟା ତଥା ପ୍ରାକୃତିକ ବିପର୍ଯ୍ୟୟରେ ଉପୁଡ଼ି ପଡ଼ିଥିବା ଏବଂ ଧରା ପଡୁଥିବା ଚୋରା କାଠ ଅମଳ କରାଯାଇ ଓଡ଼ିଶା ବନ ଉନ୍ନୟନ ନିଗମ ଜରିଆରେ ବିକ୍ରୀ କରାଯାଉଛି । ତେଣୁ ରାଜ୍ୟରେ କଞ୍ଚା କାଠ ଉତ୍ପାଦନ ଓ କାଠ

ତଥା ଜାଳେଣୀ କାଠରୁ ମିଳୁଥିବା ରାଜସ୍ୱ ବର୍ଷକୁବର୍ଷ କମିଯାଉଛି । ଏକଦା ରାଜ୍ୟରେ କାଠ ଉତ୍ପାଦନ ୧ ଲକ୍ଷ ଘନଫୁଟ ବା ତହିଁରୁ ଅଧିକ ହେଉଥିବା ବେଳେ, ବର୍ତ୍ତମାନ ତାହା କମିଯାଇ ୨୫,୦୦୦ରୁ ୩୦,୦୦୦ ଘନ ଫୁଟରେ ପହଞ୍ଚିଛି ।

ରାଜ୍ୟରେ ମିଳୁଥିବା ଅଣକାଷ୍ଠ ଜାତୀୟ ପଦାର୍ଥ ବା ଲଘୁବନଜାତ ଦ୍ରବ୍ୟ ମଧ୍ୟରେ କେନ୍ଦୁପତ୍ର ଅନ୍ୟତମ । ଓଡ଼ିଶା ବ୍ୟତୀତ ମଧ୍ୟପ୍ରଦେଶ, ବିହାର, ମହାରାଷ୍ଟ୍ର, ଆନ୍ଧ୍ର ଏବଂ ଗୁଜୁରାଟ୍‌ରେ ମଧ୍ୟ କିଛି ପରିମାଣରେ କେନ୍ଦୁ ପତ୍ର ଉତ୍ପାଦିତ ହୋଇଥାଏ । ସାରା ଭାରତରେ କେନ୍ଦୁପତ୍ର ଉତ୍ପାଦନର ପରିମାଣ ୩୦ ଲକ୍ଷ କ୍ୱିଣ୍ଟାଲ ହୋଇଥିଲା ବେଳେ, କେବଳ ଓଡ଼ିଶାରେ ଏହି ପତ୍ର ୪-୫ ଲକ୍ଷ କ୍ୱିଣ୍ଟାଲରୁ ୫ ଲକ୍ଷ କ୍ୱିଣ୍ଟାଲ୍ ପର୍ଯ୍ୟନ୍ତ ଉତ୍ପାଦିତ ହୋଇଥାଏ । ଅର୍ଥାତ୍ ଦେଶର ମୋଟ ଉତ୍ପାଦନର ୧୬, ୧୭ ଭାଗ ଆମ ରାଜ୍ୟରୁ ହିଁ ମିଳିଥାଏ । ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼ ଆଦି ପଶ୍ଚିମାଞ୍ଚଳ ଜିଲ୍ଲାମାନଙ୍କରୁ ମିଳୁଥିବା କେନ୍ଦୁପତ୍ରର ମାନ ଯଥେଷ୍ଟ ଅଧିକ । ଏଥିରୁ ଅଧିକାଂଶ ଶ୍ରୀଲଙ୍କା ଓ ପାକିସ୍ତାନକୁ ରପ୍ତାନୀ ହୋଇଥାଏ । ୧୯୭୨ ମସିହାରେ କେନ୍ଦୁପତ୍ର ଜାତୀୟକରଣ ହେଲା ପରଠାରୁ ରାଜ୍ୟ ରାଜସ୍ୱର ଏକ ବଡ଼ ଅଂଶ । ଏହି କେନ୍ଦୁପତ୍ର କାରବାରରୁହିଁ ମିଳିଥାଏ । କେନ୍ଦୁପତ୍ର ଜାତୀୟକରଣର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ପତ୍ର ତୋଳାଳୀମାନଙ୍କୁ ଉଚିତ୍ ପାରିଶ୍ରମିକ ଦେବା ଓ ସରକାରଙ୍କର ରାଜସ୍ୱ ବୃଦ୍ଧି ଘଟାଇବା ।

ଜଙ୍ଗଲ ଆମର ଜାତୀୟ ସମ୍ପତ୍ତି । ଏହା ଏକ ଖୋଲା ଗଣ୍ଡାଘର ବା ମୁକ୍ତ ରାଜକୋଷ କହିଲେ ଅତ୍ୟୁକ୍ତି ହେବନାହିଁ । ପରିବେଶ ସୁରକ୍ଷା, ଜଳ ସଂରକ୍ଷଣ, ଜୀବଜନ୍ତୁଙ୍କୁ ଆଶ୍ରୟସ୍ଥଳୀ ପ୍ରଦାନ ଆଦି ସିଧାସଳଖ ଆର୍ଥିକ ଦୃଷ୍ଟିକୋଣରୁ ହିସାବ ହୋଇ ପାରୁନଥିବା କେତେକ ଉପକାରକୁ ଛାଡ଼ିଦେଲେ, କାଠଗଣ୍ଡି, ଜାଳକାଠ, ବାଉଁଶ, କେନ୍ଦୁପତ୍ର, ଶାଳମଞ୍ଜି, ମହୁଲ, ଝୁଣା, ମହୁ, ଆଦି ଅନ୍ୟାନ୍ୟ ଲଘୁବନଜାତ ଦ୍ରବ୍ୟ ଆମର ଅରଣ୍ୟରୁ ଯଥେଷ୍ଟ ପରିମାଣରେ ଉତ୍ପାଦିତ ହୋଇଥାଏ । ରାଜ୍ୟ ରାଜକୋଷକୁ ଏକ ବଡ଼ ଧରଣର ରାଜସ୍ୱ ଜଙ୍ଗଲରୁ ପ୍ରତିବର୍ଷ ମିଳିଥାଏ । ୧୯୯୨ ମସିହା ପରଠାରୁ ଜଙ୍ଗଲରୁ କଞ୍ଚା ଗଛ କାଟିବା ସମଗ୍ର ରାଜ୍ୟରେ ନିଷିଦ୍ଧ ହୋଇଥିବା ପରିପ୍ରେକ୍ଷୀରେ କାଠ ଓ ଜାଳକାଠ ବିକ୍ରୟରୁ ରାଜସ୍ୱ କମିଯାଇଥିବାବେଳେ, ଜାତୀୟକରଣ ହୋଇଥିବା କେନ୍ଦୁପତ୍ର ଓ ବାଉଁଶ ଆଦି ବିକ୍ରୟରୁ ଅଧିକ ରାଜସ୍ୱ ଆଦାୟ ହେଉଛି ।

ଚଳିତ ୧୯୯୮ –୯୯ ଆର୍ଥିକ ବର୍ଷରେ ଜଙ୍ଗଲ ସମ୍ପଦରୁ ୧୧୫ କୋଟି ଟଙ୍କା ରାଜସ୍ୱ ମିଳିବାର ଅଟକଳ ଧାର୍ଯ୍ୟ କରାଯାଇଛି ।

ଅନ୍ୟ ଯେଉଁ ସବୁ ସମ୍ପଦରେ ଆମ ରାଜ୍ୟର ଅରଣ୍ୟ ସମୃଦ୍ଧ, ସେଗୁଡ଼ିକ ହେଲା; ଔଷଧୀୟ ବୃକ୍ଷ, ଅର୍କିଡ ଏବଂ ସର୍ବୋପରି ଆକର୍ଷଣୀୟ ବନ୍ୟପ୍ରାଣୀ ସମ୍ପଦ । ଓଡ଼ିଶାର ଅରଣ୍ୟ ସମ୍ପଦ ବିଷୟରେ ଆଲୋଚନା ଏ ସମସ୍ତ ସମ୍ପଦର ପର୍ଯ୍ୟାଲୋଚନା ବ୍ୟତୀତ ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ । ନୂତନ ଜାତୀୟ ଜଙ୍ଗଲ ନୀତିରେ ସ୍ପଷ୍ଟ କରି ଦିଆଯାଇଛି, କେବଳ ରାଜସ୍ୱ ଆଦାୟ ଜଙ୍ଗଲ ସମ୍ପଦ ସୁବିନିଯୋଗର ଏକମାତ୍ର ଉଦ୍ଦେଶ୍ୟ ନୁହେଁ । ଜଙ୍ଗଲ ନିକଟରେ ବସବାସ କରୁଥିବା ଜନସାଧାରଣ ତଥା ଜଙ୍ଗଲ ଉପରେ ନିର୍ଭର କରି ଚଳୁଥିବା ବନବାସୀମାନଙ୍କର ଜଙ୍ଗଲ ସମ୍ପଦ ବିନିଯୋଗ ଉପରେ ପ୍ରାଥମିକ ଅଧିକାର ରହିଛି । ବର୍ଷକୁ ବର୍ଷ କ୍ରମାଗତ ଜଙ୍ଗଲ କ୍ଷୟ ହେଉଥିବା ପରିପ୍ରେକ୍ଷୀରେ ଏହାର ସୁରକ୍ଷା ପରିଚାଳନା ତଥା ସୁବିନିଯୋଗ ନିମନ୍ତେ ପ୍ରତ୍ୟକ୍ଷଭାବେ ସ୍ଥାନୀୟ ଜନସାଧାରଣଙ୍କୁ ସଂଶ୍ଳିଷ୍ଟ କରିବା ପାଇଁ ବିଶେଷ ଭାବେ ପଦକ୍ଷେପ ନିଆଯାଉଛି ।

---

ନିର୍ଦ୍ଦେଶକ (ବାଣିଜ୍ୟ),
ଓଡ଼ିଶା ବନ ଉନ୍ନୟନ ନିଗମ,
ଏ–୮୪ ଖାରବେଳ ନଗର, ଭୁବନେଶ୍ୱର–୭୫୧୦୦୧

# ବାଣପୁରର ଐତିହ୍ୟ

ଭାଗ୍ୟଲିପି ମଲ୍ଲ

ବାଣପୁରର ସଭ୍ୟତା ଓ ସଂସ୍କୃତି, ଷଷ୍ଠ/ସପ୍ତମ ଶତାବ୍ଦୀ ବେଳକୁ ଶାଳିଆ ନଦୀକୂଳରେ ଗଢ଼ି ଉଠି ବିକାଶ ଲାଭ କରିଥିଲା । ଶୈଳୋଦ୍ଭବମାନଙ୍କ ରାଜତ୍ୱକାଳରେ ଏହା ଥିଲା କଙ୍ଗୋଦ ରାଜ୍ୟର ବିଭବଶାଳୀ ରାଜଧାନୀ । ଶୈଳୋଦ୍ଭବମାନଙ୍କ ପରେ ଭୌମକରମାନଙ୍କ ରାଜତ୍ୱ କାଳରେ ମଧ୍ୟ ଏହି ଅଞ୍ଚଳର ସମୃଦ୍ଧି ଓ ପ୍ରସିଦ୍ଧି ଆକୃଷ୍ଟ କରିଥିଲା ବହୁ ଧର୍ମ ଗୁରୁଙ୍କୁ । ଧାର୍ମିକ- ସାଂସ୍କୃତିକ ମାନଚିତ୍ରରେ ବାଣପୁର ଦଖଲ କରିଥିଲା ଏକ ସ୍ୱତନ୍ତ୍ର ମାନ୍ୟତା । ଭୌମକରଙ୍କ ରାଜତ୍ୱ ପରେ ସୋମ- ବଂଶୀମାନଙ୍କ ରାଜତ୍ୱ କାଳରେ କଙ୍ଗୋଦ ରାଜ୍ୟର ଏହି ସମୃଦ୍ଧ ରାଜଧାନୀ 'ବାଣପୁର' ମଧ୍ୟ ଅନୁରୂପ ବିଭବଶାଳୀ ରାଜ୍ୟର ସ୍ଥିତି ବଜାୟ ରଖିଥିଲା । ଏହି ରାଜ୍ୟର ପରିସୀମା ମହେନ୍ଦ୍ରଗିରିଠାରୁ ଚିଲିକାଯାଏ ବ୍ୟାପ୍ତ ଥିଲା । ସୋମ- ବଂଶୀମାନଙ୍କୁ ଗାଦିଚ୍ୟୁତ କରି ଗଙ୍ଗବଂଶୀମାନେ ବାଣପୁରରେ ଶାସନ ଆରମ୍ଭ କଲାବେଳକୁ ଏ ଅଞ୍ଚଳରେ ବ୍ରାହ୍ମଣ୍ୟଧର୍ମର ଉତ୍‌ଥାନ ଘଟିଥିଲା ।



ତେବେ, ସହଜଯାନ, ବୌଦ୍ଧଧର୍ମ, ଶୈବଧର୍ମ ଓ ଶାକ୍ତପୀଠ ଭାବରେ ଇତିହାସରେ ବାଣପୁରର ଗୁରୁତ୍ୱ ଯଥେଷ୍ଟ ଥିଲା । ବାଣପୁର ଅଞ୍ଚଳରେ ପୂଜାପାଉଥିବା ଦେବୀମାନଙ୍କ ମଧ୍ୟରେ ଅଧିକାଂଶ ବୌଦ୍ଧତନ୍ତ୍ରଯାନର ଦେବୀ । ଶାଳିଆ ତଟରେ ପୂଜା ପାଉଥିବା ଉଗ୍ରତାରଣୀ ବୌଦ୍ଧତାରା ହେଉଛନ୍ତି ଏହାର ଉଦାହରଣ । ବୌଦ୍ଧଧର୍ମ ସେ ସମୟରେ ବ୍ରାହ୍ମଣ୍ୟଧର୍ମକୁ କବଳିତ କରିଥିବାର ଅନୁମାନ କରାଯାଏ । ଗୋଦାବରୀଶ ମହାବିଦ୍ୟାଳୟ ନିକଟରେ ଅବସ୍ଥିତ ବାଲୁକେଶ୍ୱର ମନ୍ଦିର ଏକ ବୌଦ୍ଧସ୍ତୂପ ବା ବିହାର ଉପରେ ନିର୍ମିତ ହୋଇଥିବାର ଅନୁମାନ କରାଯାଏ । ବୌଦ୍ଧଧର୍ମର ପତନ ସମୟରେ ଏହା ବ୍ରାହ୍ମଣ୍ୟଧର୍ମ ସହ ସମନ୍ୱିତ ହୋଇ ବାଲୁକେଶ୍ୱର ମନ୍ଦିରରେ ଏହାର ପ୍ରଭାବକୁ ଅକ୍ଷୁଣ୍ଣ ରଖିଛି । ସେହିପରି ଗଙ୍ଗ ରାଜତ୍ୱକାଳରେ ନିର୍ମିତ ପ୍ରସିଦ୍ଧ ଦକ୍ଷପ୍ରଜାପତି ମନ୍ଦିର ଏହାର ଏକ ନିଦର୍ଶନ । ପୁଣି ଏଠାକାର ଦେବୀ ଭଗବତୀ ମନ୍ଦିରରେ ଥିବା ସୁନ୍ଦର ମହିଷାସୁର-ମର୍ଦ୍ଦିନୀ ଏବଂ ପାର୍ବତୀଙ୍କ ମୂର୍ତ୍ତିରୁ ଅନୁମାନ କରିହୁଏ ଯେ, ବୌଦ୍ଧଧର୍ମର ଅବସାନ ପରେ ବ୍ରାହ୍ମଣ୍ୟ, ଶୈବ ଓ 'ଶାକ୍ତ ଓ ଜୈନମାନଙ୍କ' ସମନ୍ୱୟ ଘଟିଥିଲା ଏ ଅଞ୍ଚଳରେ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଅଷ୍ଟମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିବା ବୌଦ୍ଧ, ଜୈନ ଓ ବ୍ରାହ୍ମଣ୍ୟଧର୍ମର କେତେକ ବ୍ରୋଞ୍ଜ ମୂର୍ତ୍ତିରାଜି ସଂରକ୍ଷିତ ରହିଛି । ଏଥିରୁ ବାଣପୁରର ବୌଦ୍ଧ, ଜୈନ ଓ ବ୍ରାହ୍ମଣ୍ୟଧର୍ମର ଐତିହ୍ୟ ସମ୍ପର୍କରେ ସ୍ପଷ୍ଟ ପ୍ରମାଣ ମିଳେ । ଏ ପର୍ଯ୍ୟନ୍ତ ଓଡ଼ିଶାରେ ଅସଂଖ୍ୟ ଯାନ, ମହାଯାନ ଓ ତନ୍ତ୍ରଯାନର ମୂର୍ତ୍ତି ମିଳିଥିଲେ ମଧ୍ୟ ବ୍ରୋଞ୍ଜ ନିର୍ମିତ ମୂର୍ତ୍ତି କେବଳ ଅବିଭକ୍ତ କଟକ ଜିଲ୍ଲା ତଥା ଏବର ଯାଜପୁର ଜିଲ୍ଲା ରତ୍ନଗିରିରୁ ଏବଂ ପୁରୀ ଜିଲ୍ଲାର ବାଣପୁର ନିକଟବର୍ତ୍ତୀ ଅଚ୍ୟୁତରାଜପୁରରୁ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଉଦ୍ଧାର କରାଯାଇଛି । ରତ୍ନଗିରିର ବ୍ରୋଞ୍ଜ ମୂର୍ତ୍ତି ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ଏପର୍ଯ୍ୟନ୍ତ ସାଧାରଣ ଦର୍ଶକମାନଙ୍କ ନିମନ୍ତେ ପ୍ରଦର୍ଶନ କରି ନ ଥିବା ବେଳେ ସୌଭାଗ୍ୟବଶତଃ ଅଚ୍ୟୁତରାଜପୁରର ମୂର୍ତ୍ତିଗୁଡ଼ିକ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇ ପାରିଛି ।

ଅଚ୍ୟୁତରାଜପୁରରୁ ଉଦ୍ଧାର କରାଯାଇଥିବା ବ୍ରୋଞ୍ଜ୍ ମୂର୍ତ୍ତିଗୁଡ଼ିକ ବାଣପୁର ସ୍ଥିତ ଗୋଦାବରୀଶ ମହାବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ ସମୟରେ ଦୁଇଟି ବଡ଼ ମାଟି ପସରାରେ ସଂରକ୍ଷିତଥିବାର ଦେଖାଯାଇଥିଲା। ଶହେ ସତରଟି ବ୍ରୋଞ୍ଜ୍ ମୂର୍ତ୍ତି ଏବଂ ସୋମବଂଶୀ ରାଜା ଇନ୍ଦ୍ରରଥଙ୍କର ଏକ ତାମ୍ର ଫଳକ ୧୯୬୩ ମସିହା ଜୁଲାଇ ମାସରେ ଆବିଷ୍କୃତ ହୋଇଥିଲା। ଅଗଷ୍ଟ ୧୯୬୩ ମସିହାରେ ପୁରୀ ଜିଲ୍ଲାପାଳଙ୍କ ସହାୟତାରେ ମୂର୍ତ୍ତିଗୁଡ଼ିକ ରାଜ୍ୟ ସଂଗ୍ରହାଳୟକୁ ସ୍ଥାନାନ୍ତରିତ କରାଗଲା।



ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ରଖିଥିବା ବ୍ରୋଞ୍ଜ୍ ନିର୍ମିତ ମୂର୍ତ୍ତିଗୁଡ଼ିକୁ ଅନୁଧ୍ୟାନ କଲେ, ଓଡ଼ିଶାର ବ୍ରୋଞ୍ଜ୍‌କଳା ଏବଂ ଶିଳ୍ପୀମାନଙ୍କର ଶୈଳ୍ପିକ ନିପୁଣତା ସ୍ପଷ୍ଟ ଭାବରେ ଜଣାଯାଏ। ଆଶ୍ଚର୍ଯ୍ୟର କଥା ଯେ, ମୂର୍ତ୍ତିଗୁଡ଼ିକ ଏମାନଙ୍କରେ ବିଭିନ୍ନସମୟରେ ନିର୍ମିତ ହୋଇଛି। କେତେଗୁଡ଼ିଏ ମୂର୍ତ୍ତିର ଶୈଳୀ ନିମ୍ନମାନର ହେଲେ ମଧ୍ୟ ସେ ସମୟର ତାତ୍ପର୍ଯ୍ୟ ବହନ କରେ ଏବଂ ସେଗୁଡ଼ିକ ଭୌମମାନଙ୍କର ସର୍ବପ୍ରାଚୀନ ପ୍ରସ୍ତରମନ୍ଦିର ଭୁବନେଶ୍ୱରର ବୈତାଳ, ଶିଶିରେଶ୍ୱର ଏବଂ ଲଳିତଗିରି ଓ ରତ୍ନଗିରିରେ ଥିବା ବୌଦ୍ଧକୀର୍ତ୍ତିରାଜିର କଳାକୃତି ସହିତ ସମତା ରକ୍ଷା କରେ। ପରବର୍ତ୍ତୀ ମୂର୍ତ୍ତିଗୁଡ଼ିକ ଅତି ଉଚ୍ଚମାନର ଏବଂ ସେଗୁଡ଼ିକ ବିହାରର କୁର୍କିହାର ଏବଂ ନାଳନ୍ଦାର ବ୍ରୋଞ୍ଜ୍ ମୂର୍ତ୍ତି ସହିତ ସମକକ୍ଷ। ମୂର୍ତ୍ତି ଗଠନରେ ସୌଷ୍ଠବ ଏବଂ ସମତାକୁ ନିଖୁଣ ଭାବରେ ମୂର୍ତ୍ତିତତ୍ତ୍ୱର ନିୟମ ଅନୁସାରେ ଗଢ଼ାଯାଇଛି।

ରାଜ୍ୟସଂଗ୍ରହାଳୟରେ ରକ୍ଷିତ ଥିବା କେତୋଟି ବିରଳ ତଥା ଆକର୍ଷଣୀୟ ମୂର୍ତ୍ତି ସମ୍ପର୍କରେ ସଂକ୍ଷେପରେ ବର୍ଣ୍ଣନା କରାଯାଇଛି।

ତ୍ରୈଲୋକ୍ୟ ବିଜୟ :–ମିଳିଥିବା ବ୍ରୋଞ୍ଜ୍ ମୂର୍ତ୍ତି ମଧ୍ୟରୁ ଏହା ସର୍ବବୃହତ୍ ଏବଂ ଶୈଳୀ ଦୃଷ୍ଟିରୁ ସର୍ବଶ୍ରେଷ୍ଠ ମନେହୁଏ। ଏହି ଦେବତା ବଜ୍ରହୁଙ୍କାର ମୁଦ୍ରାରେ ଶିବ ଏବଂ ପାର୍ବତୀଙ୍କ ଉପରେ ପ୍ରତ୍ୟାଳିଢ଼ ପଦରେ ଦଣ୍ଡାୟମାନ। ଜାଜ୍ୱଲ୍ୟମାନ ନୟନରୁ ଲେଲିହାନ ଶିଖା ନିର୍ଗତ ପ୍ରଭାମଣ୍ଡଳରେ ଅସଂଖ୍ୟ ଜ୍ୱଳନ୍ତ ଅଗ୍ନିଶିଖା ଦେବତାଙ୍କ କ୍ରୋଧର ନିଦର୍ଶନ। ଏହି ମୂର୍ତ୍ତି ହିନ୍ଦୁଧର୍ମ ଉପରେ ବୌଦ୍ଧଧର୍ମର ପ୍ରାଧାନ୍ୟ ପ୍ରମାଣିତ କରାଏ। ଏହାର ଆନୁମାନିକ ସମୟ ପ୍ରାୟ ଖ୍ରୀଷ୍ଟିୟ ଏକାଦଶ ଶତାବ୍ଦୀ। ଏହି ମୂର୍ତ୍ତି ଭାରତରେ ବିରଳ। ସର୍ବମୋଟ ୭ଟି ପ୍ରସ୍ତର ଏବଂ ବ୍ରୋଞ୍ଜ୍ ନିର୍ମିତ ମୂର୍ତ୍ତି ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇଥିବା ଜଣାଯାଏ।



କୁରୁକୁଲ୍ଲା :–ତନ୍ତ୍ରର ପ୍ରଭାବ ଯେତେବେଳେ ଚରମ ଉତ୍କର୍ଷତା ଲାଭ କରିଥିଲା, ସେତେବେଳେ ସମାଜରେ ତନ୍ତ୍ରଯାନର ପ୍ରାଧାନ୍ୟ ବିସ୍ତାର ଲାଭ କରିବାପାଇଁ କୁରୁକୁଲ୍ଲା, ବଜ୍ରବରାହୀ, ମାରିଚୀ ଓ ଚୁଣ୍ଡା ପ୍ରଭୃତି ମୂର୍ତ୍ତିଗୁଡ଼ିକର ସୃଷ୍ଟି କରାଗଲା। ସେତେବେଳେ ଜନମାନସରେ ଏକ ଭୟର ସଞ୍ଚାର କରାଯାଇ ଏହି ମୂର୍ତ୍ତିଗୁଡ଼ିକ ପ୍ରତି ଭକ୍ତି ପ୍ରଦର୍ଶନ ନିମନ୍ତେ ଏକ ପ୍ରକାର ବାଧ୍ୟ କରାଯାଉଥିଲା। ତନ୍ତ୍ର ସାଧନାକୁ ଅବମାନନା କଲେ ବଂଶଲୋପର ଭୟରେ ଲୋକେ ଏହି ମୂର୍ତ୍ତିଗୁଡ଼ିକୁ ଅତ୍ୟଧିକ ଭକ୍ତି କରିବାକୁ ଲାଗିଲେ।

ସାଧାନମାଳା ଅନୁସାରେ ଉଡ଼ିଡ଼ିୟାନ ବା ଆଧୁନିକ ଓଡ଼ିଶା ସାଧାନମାଳା ଅନୁସାରେ ଶ୍ରେଷ୍ଠ ପୀଠ ଥିଲା । ସମ୍ଭବତଃ କୁରୁକୁଲ୍ଲା ସାଧନର ଶ୍ରେଷ୍ଠ ପୀଠ ଥିଲା । କୁରୁକୁଲ୍ଲା ସାଧନର ପୀଠର ବା କ୍ଷେତ୍ରର କୁରୁକୁଲ୍ଲା ଥିଲେ ଅଚ୍ୟୁତରାଜପୁର ପୀଠର ବା କ୍ଷେତ୍ରର କୁରୁକୁଲ୍ଲା ଥିଲେ ପୀଠଦେବୀ । ଏହି ମୂର୍ତ୍ତିଟି କାରୁକାର୍ଯ୍ୟ ମଣ୍ଡିତ ବିଭିନ୍ନ ପ୍ରକାରର ହାର । କର୍ଣ୍ଣ କୁଣ୍ଡଳ, କିରୀଟ ମୁକୁଟ, ଅଙ୍ଗ ଘାଗୁଡ଼ି, ବାହୁବନ୍ଧ ପ୍ରଭୃତି ବିଭିନ୍ନ ଅଳଙ୍କାରରେ ମଣ୍ଡିତ ହୋଇ ମଧ୍ୟ ଭୟଙ୍କରୀ । ଗଳାରେ ୧୫ଟି ମୁଣ୍ଡବିଶିଷ୍ଟ ମୁଣ୍ଡମାଳ ଶୋଭିତ ଏବଂ କେଶରାଜି ଜ୍ୱଳନ୍ତ ଅଗ୍ନିଶିଖା ସଦୃଶ । ଅର୍ଦ୍ଧପର୍ଯ୍ୟଙ୍କ ମୁଦ୍ରାରେ ଦେବୀ ନୃତ୍ୟରତା । ଦେବୀଙ୍କର ତୀର ମାରିବା ଭଙ୍ଗୀ କୁରୁକୁଲ୍ଲାଙ୍କର ମହତ୍ତ୍ୱ ପ୍ରତିପାଦନ କରେ । ଗୋଲାକୃତି ଗଠନଶୈଳୀ ଦୃଷ୍ଟିରୁ ତାଙ୍କୁ ନବମ ଶତାବ୍ଦୀର ବୋଲି ପ୍ରତିପାଦିତ କରାଯାଇପାରେ ।

ତାରା :—ଅଚ୍ୟୁତରାଜପୁରରୁ ୫ଟି ତାରା ମୂର୍ତ୍ତି ମିଳିଛି । ସେଥିମଧ୍ୟରୁ ଗୋଟିଏ ଷଡ଼ଭୁଜା ବିଶିଷ୍ଟ ଏବଂ ଅନ୍ୟଗୁଡ଼ିକ ଚତୁଃହସ୍ତା ବିଶିଷ୍ଟ । ବଜ୍ର ପର୍ଯ୍ୟଙ୍କ ଆସନରେ ଉପବିଷ୍ଟ ଧ୍ୟାନମୁଦ୍ରାରେ ମଗ୍ନା । ହସ୍ତରେ ଅକ୍ଷ୍ୟମାଳା ଏବଂ କମଣ୍ଡଳୁ ସୁଶୋଭିତ । ସାଧନମାଳା ଅନୁସାରେ ଏହି ମୂର୍ତ୍ତିଗୁଡ଼ିକ ସମ୍ପୂର୍ଣ୍ଣଭାବରେ ଖାପ ଖାଉ ନଥିଲେ ମଧ୍ୟ ଏଗୁଡ଼ିକୁ ଐତିହାସିକମାନେ ତାରାବୋଲି ଅଭିହିତ କରିଛନ୍ତି । ସର୍ବ ଅଳଙ୍କାରରେ ମଣ୍ଡିତା ଏହି ମୂର୍ତ୍ତିଗୁଡ଼ିକ କାରୁକାର୍ଯ୍ୟ ଦୃଷ୍ଟିରୁ ବିଭିନ୍ନ ସମୟର ହୋଇଥିବାର ଅନୁମାନ କରାଯାଏ । ତେବେ ଏହି ଆନୁମାନିକ ସମୟ ପ୍ରାୟତଃ ଖ୍ରୀଷ୍ଟିୟ ନବମରୁ ଏକାଦଶ ଶତାବ୍ଦୀ ମଧ୍ୟରେ ହୋଇଥାଇପାରେ ।

ତ୍ରୈଲୋକ୍ୟ ବିଜୟ (ବଜ୍ରହୁଙ୍କାର), କୁରୁକୁଲ୍ଲା ବା ତାରାଙ୍କ ମୂର୍ତ୍ତି ମିଳିଥିବା ୧୧୭ଟି ବ୍ରୋଞ୍ଜ୍ ମୂର୍ତ୍ତି ମଧ୍ୟରୁ ୭୫ଟି ବୌଦ୍ଧ ମୂର୍ତ୍ତି, ୧୦ଟି ଜୈନ ମୂର୍ତ୍ତି, ୫ଟି ବ୍ରାହ୍ମଣ୍ୟଧର୍ମର ମୂର୍ତ୍ତି ସହ ୨୭ଟି ସ୍ତୂପ ଆବିଷ୍କୃତ ହୋଇଛି । ଏହି ମୂର୍ତ୍ତିମାନଙ୍କ ମଧ୍ୟରେ ତାରା, ବଜ୍ରସତ୍ତ୍ୱ, ପଦ୍ମପାଣି, ଅବଲୋକିତେଶ୍ୱର, ଭ୍ରୁକୁଟୀ, ବସୁଧାରା ପ୍ରଭୃତି ମୂର୍ତ୍ତିଗୁଡ଼ିକ ବିଶେଷ ତାତ୍ପର୍ଯ୍ୟ ବହନ କରେ । ଏହାବ୍ୟତୀତ ପ୍ରସ୍ତର ନିର୍ମିତ ବୁଦ୍ଧଙ୍କର ମସ୍ତକ ଏବଂ ଏକ ତାରା ମୂର୍ତ୍ତି ବାଣପୁର ବିଦ୍ୟାଳୟ ପରିସରରେ ସୁରକ୍ଷିତ ଭାବେ ରଖାଯାଇଛି ।

ଅଚ୍ୟୁତରାଜପୁରରୁ ଆବିଷ୍କୃତ ବ୍ରୋଞ୍ଜ୍ ମୂର୍ତ୍ତିରାଜି ଓଡ଼ିଶାରେ ବୌଦ୍ଧଧର୍ମ ଓ କଳାର ପରାକାଷ୍ଠା ବହନ କରେ । ପ୍ରତ୍ନତତ୍ତ୍ୱବିତ୍ ଡଃ ଦେବଳା ମିତ୍ର ଏହି ବ୍ରୋଞ୍ଜ୍ ମୂର୍ତ୍ତିଗୁଡ଼ିକ ସମ୍ପର୍କରେ "Bronzes from Achyutraj pur of Orissa" ନାମକ ଏକ ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ଏ ସବୁକୁ ଗଭୀରଭାବେ ଅନୁଧ୍ୟାନ କଲେ, ବାଣପୁରର ସାଂସ୍କୃତିକ ଐତିହ୍ୟ ଅତି ପ୍ରାଚୀନ ଏବଂ ଏଠାରେ ବୌଦ୍ଧ, ଜୈନ ଏବଂ ବ୍ରାହ୍ମଣ୍ୟଧର୍ମର ପ୍ରସାର ବିଭିନ୍ନ ସମୟରେ ଘଟିଥିଲା ବୋଲି ସ୍ପଷ୍ଟ ପ୍ରମାଣ ମିଳେ ।

---

ସହ ସଂଗ୍ରହାଧ୍ୟକ୍ଷା,
ବ୍ରୋଞ୍ଜ୍ ଗ୍ୟାଲେରୀ,
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର.

---

### ସମନ୍ୱିତ ସୁଲଭ ଶୌଚାଳୟ ଯୋଜନା (ଆଇ.ଏଲ୍.ସି.ଏସ୍.)

ଓଡ଼ିଶା ସହର ଓ ଗ୍ରାମାଞ୍ଚଳ ଲୋକମାନଙ୍କର ସୁବିଧା ନିମନ୍ତେ ନଗର ଉନ୍ନୟନ ବିଭାଗ ନୂତନ ଭାବେ ଏକ ଯୋଜନାର ଶୁଭାରମ୍ଭ କରିଅଛନ୍ତି । ଲୋକମାନଙ୍କର ଅତ୍ୟନ୍ତ ଜରୁରୀ ହେଉଛି ଶୌଚାଳୟ । ଗ୍ରାମ ହେଉ ବା ସହର ହେଉ, ମୂର୍ଖ ହୁଅନ୍ତୁ, ଗରିବ ହୁଅନ୍ତୁ ବା ଧନୀ ହୁଅନ୍ତୁ ସମସ୍ତଙ୍କ ପାଇଁ ଶୌଚାଳୟର ଆବଶ୍ୟକତା ରହିଅଛି । ସାଧାରଣତଃ ଗ୍ରାମାଞ୍ଚଳମାନଙ୍କରେ ଲୋକମାନେ ନଈକୂଳ, ପୋଖରୀ ତୁଠ, ବିଲ, ପଡିଆ ଇତ୍ୟାଦି ସ୍ଥାନମାନଙ୍କୁ ନିଜର ଶୌଚାଳୟ ରୂପେ ବ୍ୟବହାର କରିଥାଆନ୍ତି । ସେହିପରି ସହରତଳି ବସ୍ତି ବାସିନ୍ଦାମାନେ ମଧ୍ୟ ସହରର ରାସ୍ତା ପାର୍ଶ୍ୱରେ ଓ ଯେଉଁଠି ଫାଙ୍କା ସ୍ଥାନ ପାଆନ୍ତି, ସେଗୁଡିକୁ ନିଜର ଶୌଚାଳୟ ରୂପେ ବ୍ୟବହାର କରିଥାଆନ୍ତି । କାରଣ ସେମାନଙ୍କର ଶୌଚାଳୟର ସୁବିଧା ନାହିଁ । ତତ୍‌ସହ ପରିବେଶ ସଚେତନତା ଓ ପରିଷ୍କାର ପରିଚ୍ଛନ୍ନତା ଜ୍ଞାନର ଅଭାବ ରହିଅଛି ।

ତେଣୁ ନଗର ଉନ୍ନୟନ ବିଭାଗ ନୂଆକରି ଶୁଭାରମ୍ଭ କରିଥିବା ସମନ୍ୱିତ ସୁଲଭ ଶୌଚାଳୟ ଯୋଜନା (ଆଇ.ଏଲ୍.ସି.ଏସ୍.)ଟିକୁ ଓଡ଼ିଶାର ପ୍ରତ୍ୟେକ ପୌର ପରିଷଦ ଓ ବିଜ୍ଞାପିତ ଅଂଚଳ ମାଧ୍ୟମରେ କାର୍ଯ୍ୟକାରୀ କରିବା ପାଇଁ ନିଷ୍ପତ୍ତି ହୋଇଥିଲା । ଇତିମଧ୍ୟରେ ଏହି ନୂତନ ଯୋଜନାଟିର କାର୍ଯ୍ୟକ୍ରମ ଆରମ୍ଭ ହୋଇସାରିଛି । ଏହି ଯୋଜନା ନିମିତ୍ତ ୮ ଲକ୍ଷ ଟଙ୍କାର ଏକ ନିଅଣ୍ଟିଆ ବଜେଟ୍ ଧାର୍ଯ୍ୟ କରାଯାଇଛି । ଏଥିସହିତ ୫ବର୍ଷ ସମୟ ମଧ୍ୟ ନିର୍ଦ୍ଧାରିତ ହୋଇଅଛି । ଆଶା କରାଯାଉଛି ଏହି ଯୋଜନା ଦ୍ୱାରା ସ୍ୱଳ୍ପ ରୋଜଗାରକ୍ଷମ ବ୍ୟକ୍ତିମାନେ ଅଧିକ ଉପକୃତ ହେବେ । ତତ୍‌ସହିତ ଗ୍ରାମାଂଚଳ ଓ ସହରତଳି ବସ୍ତିବାସିନ୍ଦା ଲୋକମାନେ ଅପରିଷ୍କାର ଅସ୍ୱାସ୍ଥ୍ୟକର ପରିବେଶରୁ ନିଜକୁ ମୁକ୍ତ କରି ପାରିବେ ।

# ଓଡ଼ିଶା ନାମକରଣର ଭାଷ୍ୟକାର : ଶୁଦ୍ରମୁନି ସାରଳା ଦାସ

ଶ୍ରୀ ସଚ୍ଚିଦାନନ୍ଦ ବେହେରା

ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ । କବି ସ୍ୱୟଂମ୍ଭୁ – ପରିଭୂ । ସେ ଦ୍ରଷ୍ଟା ଓ ସ୍ରଷ୍ଟା । ସଂସ୍କୃତ ପୁରାଣ ସାହିତ୍ୟର ଅବସାନ ଘଟାଇ ଓଡ଼ିଶାର ଆଦି ଭାଷ୍ୟକାର ଭାବେ ଶୁଦ୍ରମୁନି ସାରଳା ଦାସ ଗାଉଁଲି ଲୋକର ଭାବଧାରାକୁ ସ୍ୱର୍ଣ୍ଣ କଳାଭଳି ସାହିତ୍ୟ ସୃଷ୍ଟି କରି ଯେଉଁ କାବ୍ୟ–କୋଣାର୍କ ନିର୍ମାଣ କଲେ, ତାହା ଚିର ସ୍ମରଣୀୟ । କବି ବେଦ, ଉପନିଷଦ, କଥାସରିତ ସାଗର, ପଞ୍ଚତନ୍ତ୍ର ପରି କଠିନ ଗ୍ରନ୍ଥକୁ ଚିପୁଡ଼ି ତା'ର ନିର୍ଯ୍ୟାସରେ କେବଳ ପଣ୍ଡିତବର୍ଗ ନୁହେଁ, ଓଡ଼ିଶାର ଗ୍ରାମ୍ୟ ଜୀବନ ଓ ପୁରପଲ୍ଲୀର ପ୍ରାଣକୁ ରସସିକ୍ତ କରିଛନ୍ତି । 'ମହାଭାରତ', 'ଚଣ୍ଡୀପୁରାଣ', 'ବିଲଙ୍କା ରାମାୟଣ', 'ବିଚିତ୍ର ରାମାୟଣ', 'ଲକ୍ଷ୍ମୀ–ନାରାୟଣ ବଚନିକା' ରଚନା କରି ସେ ସାହିତ୍ୟ ଓ ସଂସ୍କୃତିର ଯେଉଁ ବିରାଟ ଭଣ୍ଡାରର ସୃଷ୍ଟି କଲେ, ତାହା ଯୁଗାବଧି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧିବନ୍ତ କରି ଆସୁଛି । କବି ଉଲ୍ଲେଖ କରିଛନ୍ତି:



"ପ୍ରଥମେ ଶ୍ରୀରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିରୀ ଭାଗବତ ।"

(ଚଣ୍ଡୀ ପୁରାଣ)

ପଞ୍ଚଦଶ ଶତାବ୍ଦୀରେ କବି ସାରଳା ଦାସ ଅଧୁନା ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ ଝଙ୍କଡ଼ର ଏକ ଦରିଦ୍ର କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାଲ୍ୟ ନାମ ସିଦ୍ଧେଶ୍ୱର ପରିଡ଼ା ଏବଂ ଗଜପତି କପିଳେନ୍ଦ୍ର ଦେବଙ୍କ ସମସାମୟିକ ବୋଲି କବି ତାଙ୍କ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ବହୁ ପ୍ରଜ୍ଞା–ପ୍ରତିଭା ଓ ଶାସ୍ତ୍ରବିତ୍ ହୋଇ ମଧ୍ୟ ନିଜକୁ ମୂର୍ଖ–ଅପଣ୍ଡିତ ଭାବେ ବର୍ଣ୍ଣନା କରି ନମନୀୟତାର ପରିଚୟ ଦେବା ସଙ୍ଗେ ସଙ୍ଗେ ସାରଳା ଦେବୀଙ୍କ ଦାସ ଏବଂ ସେବକ ଭାବରେ ନିଜର ପରିଚୟ ଦେଇଛନ୍ତି । କବିଙ୍କ ଭାଷାରେ :

"କଳିକାଳ ଧ୍ୱଂସିଣ ଭୋଗେଣ କୋଟୀ ପ୍ରଜା
ପ୍ରଣମିତେ ଛନ୍ତି କପିଳେଶ୍ୱର ମହାରାଜା ।"

(ମହାଭାରତ ଆଦିପର୍ବ)

x x x

"ସାରଳା ଦେବୀ ଚଣ୍ଡୀ ଅଟଇ ବରଷ୍ଣବୀ
ତାହାଙ୍କର ପୁତ୍ର ମୁଁ ସାରୋଳ ଦାସ କବି ।"

(ଆଦିପର୍ବ, ପୃ: ୨–୩)

୧୮୯୮ ସାଲରେ ରଏଲ ଏସିଆଟିକ୍ ସୋସାଇଟି ବେଙ୍ଗଲ ପତ୍ରିକାରେ ଓଡ଼ିଆ ଭାଷା ସାହିତ୍ୟ ପ୍ରବନ୍ଧରେ ମନମୋହନ ଚକ୍ରବର୍ତ୍ତୀ ସାରଳା ଦାସଙ୍କ ସମ୍ବନ୍ଧରେ ଲେଖିଛନ୍ତି : "According to tradition Sarala Das was a resident of the village Kalinga in Pragana Jhankara."

## ପ୍ରତିଭା :

ସାରଳା ଦାସ କେବଳ ଆଦିକବି ନୁହନ୍ତି, ସେ ଏକାଧାରରେ କଥାଶିଳ୍ପୀ, ଶାସ୍ତ୍ରବିତ୍, କୃଷକ, ସୈନିକ, ଜାତୀୟତାବାଦୀ, ସ୍ୱାଭିମାନୀ, ଯୁଗସ୍ରଷ୍ଟା, ବେଦ, ଜ୍ୟୋତିଷ, ଯୋଗ, ତନ୍ତ୍ର, ମନ୍ତ୍ର, କାମଶାସ୍ତ୍ର, ଯୁଦ୍ଧ ଶାସ୍ତ୍ର ଆଦି ବହୁ ପ୍ରତିଭାର ଅଧିକାରୀ ଥିଲେ । ତାଙ୍କର ଓଡ଼ିଆ ଭାଷାତତ୍ତ୍ୱ, ଉତ୍କଳର ଧାର୍ମିକ ଆଭିମୁଖ୍ୟ, ସମାଜ ଚିତ୍ର, ନୈତିକତା, ପ୍ରାକୃତିକ ଦୃଶ୍ୟ ସମ୍ପଦ, ସାଂସ୍କୃତିକ ଗୌରବ, ପୌରାଣିକ ଜ୍ଞାନ ଓ ଗବେଷଣା, ଆଗ୍ରହ–ବିଗ୍ରହ ତଥା ବ୍ୟବହାର ଦୃଷ୍ଟିରୁ ଚିନ୍ତା କଲେ ସାରଳା ଦାସଙ୍କ ମହୀୟସୀ ପ୍ରତିଭା ନିକଟରେ ଯେ କୌଣସି ବିଦଗ୍ଧ ପାଠକର ଚିତ୍ତ ସ୍ୱତଃ ଅବନତ ହୋଇଯାଏ ।

### ଓଡ଼ିଶା ନାମକରଣ :

ଆଦିକବିଙ୍କ ରଚନା କାଳକୁ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟ ଏକା ସଙ୍ଗେ ମଣି-କାଞ୍ଚନର ସଂଯୋଗ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହା ଇତିହାସର ଏକ ସୁବର୍ଣ୍ଣ ଯୁଗ। କପିଳେନ୍ଦ୍ରଙ୍କ ରାଜତ୍ୱ ହିଁ ଯଥାର୍ଥରେ ଓଡ଼ିଆ ରାଜତ୍ୱ। ଏହି ପଞ୍ଚଦଶ ଶତାବ୍ଦୀରେ କବିଙ୍କ ଲେଖନୀ ଓଡ଼ିଶା ନାମକରଣର ସାର୍ଥକତା ପ୍ରତିପାଦନ କରିଛି। କବିଙ୍କ ଭାଷାରେ :

"ଆଦ୍ୟରେ ପୃଥିବୀ ନବଭାଗ ରାଜା କଲେ
ନବଖଣ୍ଡ ମେଦିନୀ ନବପୁତ୍ରେ ବାଣ୍ଟି ଦେଲେ।
ତାହାର ଜ୍ୟେଷ୍ଠ ପୁତ୍ର ନାମ ପୁରୁ ମହୀପତି
ଓଡ଼ିଯାଣୀ ଭାରିଯାର ସେ ଅଟଇ ସନ୍ତତି।
ମାତାଙ୍କ ଭାଗ ଯେ ଓଡ଼ରାଷ୍ଟ୍ର ମଣ୍ଡଳେ
ତେଣୁ ସେ ଓଡ଼ରାଷ୍ଟ୍ର ଭୂଅଖଣ୍ଡ ସର୍ବକାଳେ।"
(ଆଦିପର୍ବ ୧ମ, ପୃଃ ୨୭)

ଓଡ଼ରାଷ୍ଟ୍ର ସଂ-ଓଡ୍ର ବିଷୟ-ଓଡ୍ର ବିଷ-ଓଡ଼ିଶା
ତେଣୁ ଓଡ଼ିଶା ଭାରତ ଖଣ୍ଡମଣ୍ଡଳ ସର୍ବକାଳେ।
(ଆଦିପର୍ବ ପୃଃ୬)

ଏହାକୁ ସ୍ୱୀକାର କରି ଉଲ୍ଲେଖ ହୋଇଛି : "Poct Sarala Das mentions both the words 'Odra Rastra' and Odisa in his famous treatise 'MOHABHARAT', while Gajapati Kapilendra Deva (1435—1467 A.D.) in his proclamation inscribed on the temple walls of JAGANNATH calls his territory as Orissa Rajya. Thus famous the 15th century A.D. onward the land of the Oriya people was called Redisa or Odisa."

(Gazetteer of India, Orissa State, Vol.I)

### ଐତିହାସିକ ବିବରଣୀ :

କପିଳେନ୍ଦ୍ର ଦେବଙ୍କ ସମୟରେ ଓଡ଼ିଶାର ସାମରିକ ଶକ୍ତି ବିପୁଳ ଭାବରେ ଗଢ଼ି ଉଠିଥିଲା। ୧୪୪୮ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ର କୃଷ୍ଣା, ଗୋଦାବରୀ ରାଜ୍ୟର କୁଣ୍ଡାବିନ୍ଦୁ ଦୁର୍ଗ ଆକ୍ରମଣ କରି ଦକ୍ଷିଣର ବିରାଟ ରାଜ୍ୟ ଅଧିକାର କଲେ। ଦେବରକୋଣ୍ଡା, ତେଲିଙ୍ଗାନା ଅଞ୍ଚଳ ମୁକ୍ତ କରି ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କଲେ। କବିଙ୍କ ବର୍ଣ୍ଣିତ ଜମାଗୋଷ୍ଠ ହେଉଛନ୍ତି ହୁମାୟୁନଙ୍କ ସେନାପତି ଜଲାଲ୍ ଖାଁ ଏବଂ ଦରଦ ସେନ ହେଉଛନ୍ତି ହୁମାୟୁନ। 'ମହାଭାରତ'ର ବ୍ରହ୍ମସାହୀ ହେଉଛି ବାହମନୀ ରାଜ୍ୟ। କପିଳେନ୍ଦ୍ର ଦେବଙ୍କ ସମରସଜ୍ଜା, ଯୁଦ୍ଧ ଯାତ୍ରା, ରଣ ହୁଙ୍କାର, ମହାଭାରତରେ ପ୍ରତିଫଳିତ ହୋଇଛି। ଏହାକୁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପାଣ୍ଡବଙ୍କ ଯୁଦ୍ଧ ଅଭିଯାନ ଭାବେ ମତବ୍ୟକ୍ତ କରିଛନ୍ତି।

### ବୈଶିଷ୍ଟ୍ୟ :

ପାଣିନିଙ୍କ ବ୍ୟୁତ୍ପତ୍ତି ଅନୁଯାୟୀ 'ଭାରତ' ଶବ୍ଦର ବ୍ୟୁତ୍ପତ୍ତି ହେଉଛି ଭରତଙ୍କ ବଂଶଧର। ମହାଭାରତର ଅର୍ଥ ହେଉଛି ଭରତ ବଂଶଧରମାନଙ୍କ ମଧ୍ୟରେ ଯୁଦ୍ଧ ସମ୍ବନ୍ଧୀୟ ବିରାଟ ପୁରାଣ। ସାରଳା ଦାସଙ୍କ 'ମହାଭାରତ' ନାମକୁ ମାତ୍ର ସିନା, କିନ୍ତୁ ଏହାର ପ୍ରତ୍ୟେକ ବିଭାବରେ ଓଡ଼ିଆ ଜାତିର ଗୌରବମୟ ଜାତୀୟ ଇତିହାସ ଫୁଟି ଉଠିଛି। ଏଥିରେ ପ୍ରାଚୀନ ଓଡ଼ିଆ କୃଷକର ଭକ୍ତି ପୁଣି ଅନବଦ୍ୟ ଓ ଅନାବିଳ। ସଂସ୍କୃତ 'ମହାଭାରତ'ର କୃଷ୍ଣ, ନାରାୟଣ, ବାସୁଦେବ କଦାପି ସାରଳା 'ମହାଭାରତ'ର କୃଷ୍ଣ ନୁହନ୍ତି। ସାରଳା 'ମହାଭାରତ'ର କୃଷ୍ଣ ଓଡ଼ିଶାର ଜଗନ୍ନାଥ। ତାଙ୍କୁ କେନ୍ଦ୍ର କରି ସମଗ୍ର ମହାଭାରତ ଉଦ୍ଭାସିତ ହୋଇଛି। ତାଙ୍କର ଗୁଳିଚଳଣିରେ ଓଡ଼ିଆ ଗୁଳିଚଳଣି ପୂରି ରହିଛି। ତାଙ୍କଠାରେ ଦେବତ୍ୱ ଅପେକ୍ଷା ମାନବତ୍ୱ ଅଧିକ ପ୍ରକଟିତ ହୋଇଛି।

ଯିଏ ମାଟିର ଚିରନ୍ତନ ବାସ୍ତବତାକୁ ଅଙ୍ଗେ ଲିଭାଇଛନ୍ତି, ତାଙ୍କରି କାବ୍ୟ ପ୍ରାଣ ମାଟିର ମଣିଷମାନଙ୍କ ପାଇଁ ଅତି ଅନ୍ତରଙ୍ଗ, ସମ୍ବେଦନଶୀଳ ହୋଇଯାଏ। ପ୍ରାଣର ସ୍ପନ୍ଦନ ସେଠି ଜୀବନ୍ତ ରୂପ ନିଏ। ଯାହା ଫଳରେ ସାରଳା ଦାସଙ୍କ କବିତ୍ୱ ସଂସ୍କାର ଆଜି ଓଡ଼ିଶାର ଗ୍ରାମ୍ୟ ଜୀବନକୁ ଆନନ୍ଦ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଘରେ ଘରେ କବି ଚିର ନମସ୍ୟ ହୋଇ ରହିଛନ୍ତି।

---

ଉପ ସୂଚନା ଅଧିକାରୀ,
ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର

# ସାହିତ୍ୟ–ଚିତ୍ତ ଚିତ୍ତ ଭାଇ

**ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର**

ଜ୍ଞାନୀଗୁଣୀମାନଙ୍କଠାରୁ ଆଦରରେ ଚିତ୍ତ ଭାଇ ଡାକ ଶୁଣିବା ପରେ ଯେ ଅତି ଆପଣାର ହୋଇଯାଇ ଆତ୍ମୀୟତାର ରଜ୍ଜୁରେ ଚିତ୍ତ ସହିତ ମିତ ବାନ୍ଧି ପାରନ୍ତି, ବର୍ଷୀୟାନମାନଙ୍କୁ ଯେ ବିନମ୍ର ପୁରଃସର ପ୍ରଣିପାତ କରି ସମବୟସ୍କଙ୍କ ସାନ୍ନିଧ୍ୟ ପାଇ ଯିଏ ଆପଣାକୁ ଧନ୍ୟ ମନେ କରନ୍ତି, ସେ ହେଲେ ସର୍ବଜନାଦୃତ ନୀରବ ସାହିତ୍ୟ ସାଧକ ଚିତ୍ତରଞ୍ଜନ ଦାସ ।

ତାଙ୍କ ରଚିତ "ବିଶ୍ୱକୁ ଗବାକ୍ଷ" ପୁସ୍ତକ ୧୯୯୮ର ଶ୍ରେଷ୍ଠ ସାହିତ୍ୟ ପୁସ୍ତକ ଭାବେ ଏଥର କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛି । ବିଳମ୍ବରେ ହେଲେ ହେଁ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ସଂସ୍ଥା ତାଙ୍କୁ ଏହି ପୁରସ୍କାର ପ୍ରଦାନ କରି ଯେପରି ଅଧିକ ଗୋରବାନ୍ୱିତ ହୋଇଛନ୍ତି ।

ପୁରୁଣା କଟକ ଜିଲ୍ଲାର (ଏବେର ଜଗତସିଂହପୁର) ବାଗଲପୁର ଗ୍ରାମରେ ୧୯୨୩ ମସିହାରେ ଜନ୍ମଗ୍ରହଣ କରିଥିବା ଏହି ଉପାଧି ନବାରଦ, ପ୍ରଚ୍ଛଦବିହୀନ ସାହିତ୍ୟ ସାଧକଙ୍କର ପରିଚୟ କିନ୍ତୁ ଅନାବଶ୍ୟକ । ସେ ନିଜେ ହିଁ ନିଜର ପରିଚୟ । ସ୍ୱଭାବ ସୁଲଭ ସରଳ ଓ ନିରାଡ଼ମ୍ବର ତାଙ୍କର ଆଚରଣ । କିନ୍ତୁ ତାଙ୍କର ଭିନ୍ନ ଶୈଳୀ ଓ ସ୍ୱାଦର ଲେଖା ପ୍ରତ୍ୟେକ ପାଠକକୁ ଆମୋଦିତ କରିଥାଏ । ଚିନ୍ତା କରିବାକୁ ଖୋରାକ ଯୋଗାଇଥାଏ । ଯଦିଓ ସେ ଗଳ୍ପ, ଉପନ୍ୟାସ ବା କାବ୍ୟ ଓ କବିତା ଲେଖନ୍ତି ନାହିଁ ।

ଆଜି ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ଅନେକ ସୁପରିଚିତ କବି ଓ ଗାଳ୍ପିକ ଯୁବାବସ୍ଥାରେ ତାଙ୍କର ପ୍ରେରଣା ଓ ସାନ୍ନିଧ୍ୟ ଲାଭ କରିଥିଲେ । "ଚିତ୍ତ ଭାଇ" ଯେପରି ସେମାନଙ୍କ ଅସରନ୍ତି ପ୍ରେରଣାର ଉତ୍ସ । କବି ଶ୍ରୀନିବାସ ଉଦ୍‌ଗାତାଙ୍କ 'ଏବଂ' ପୁସ୍ତକରେ ଏବଂ ଅଧ୍ୟାପକ, କବି ଓ ଚିତ୍ରଶିଳ୍ପୀ ଶ୍ରୀ ପ୍ରମୋଦ କୁମାର ମହାନ୍ତିଙ୍କର ପ୍ରଥମ କବିତା ପୁସ୍ତକ 'ଡମରୁ' କିମ୍ବା ଅଧ୍ୟାପକ, କବି ଓ ଗାଳ୍ପିକ ବିଶ୍ୱରଞ୍ଜନଙ୍କର ପ୍ରଥମ କବିତା ପୁସ୍ତକ 'ଜୀବନ ଚର୍ଯ୍ୟା'ର ଆଦ୍ୟରେ ରହିଛି ଚିତ୍ତ ଭାଇଙ୍କର ଦୀର୍ଘ ବା ନାତିଦୀର୍ଘ ମୁଖବନ୍ଧ । କବିତାଗୁଡ଼ିକ ପରି ମୁଖବନ୍ଧ ଦୁଇଟି ମଧ୍ୟ ବେଶ୍ ଭାବ ଗଦଗଦ ଓ ସରସ ।

ଓଡ଼ିଆ ସାହିତ୍ୟର ବିଶିଷ୍ଟ କବି ଓ ସମାଲୋଚକ ଡକ୍ଟର ମାୟାଧର ମାନସିଂ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ପକ୍ଷରୁ 'ଓଡ଼ିଆ ସାହିତ୍ୟର ଇତିହାସ' ସମ୍ପର୍କରେ ଗୋଟିଏ ଇଂରାଜୀରେ ଓ ଅନ୍ୟଟି ଓଡ଼ିଆରେ ଦୁଇଟି ପୁସ୍ତକ ରଚନା କରିଛନ୍ତି । 'ଓଡ଼ିଆ ସାହିତ୍ୟର ଇତିହାସ' ପୁସ୍ତକଟିରେ ସେ ମୌଳିକ ଚିନ୍ତା ସମ୍ବଳିତ ମନନଶୀଳ ପ୍ରବନ୍ଧ ରଚନା ଲାଗି ଆଧୁନିକ କାଳର ଦୁଇଜଣ ଓଡ଼ିଆ ଲେଖକଙ୍କର ପ୍ରବନ୍ଧକୁ ଖୁବ୍ ପ୍ରଶଂସା କରି ଯାଇଛନ୍ତି ।

ଜଣେ ପ୍ରବୀଣ ଓ ଆଉ ଜଣେ ତରୁଣ । ପ୍ରବୀଣ ଜଣକ ହେଲେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଓ ତରୁଣ ଜଣକ ହେଲେ ଶ୍ରୀ ଚିତ୍ତ ରଞ୍ଜନ ଦାସ । ଗୋଟିଏ ଅଦ୍ଭୁତ ସାମଞ୍ଜସ୍ୟ — ବିଳମ୍ବରେ ୧୯୮୮ରେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ତାଙ୍କର 'ଘରଡିହ' ଉପନ୍ୟାସ ଲାଗି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ । ଆଉ ଏହାର ଠିକ୍ ଦଶ ବର୍ଷ ପରେ ୧୯୯୮ରେ ଶ୍ରୀ ଚିତ୍ତ ରଞ୍ଜନ ଦାସ ତାଙ୍କ 'ବିଶ୍ୱକୁ ଗବାକ୍ଷ' ଲଳିତ ନିବନ୍ଧ ଲାଗି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ ।

ଆମ ପିଲାଦିନେ, 'ଡଗର' ପତ୍ରିକାରୁ 'ସାଗର ଯାତ୍ରୀ' ଶୀର୍ଷକରେ ଚିତ୍ତ ଭାଇଙ୍କର ଯେଉଁ ଲେଖା ଧାରାବାହିକ ଭାବେ ପଢୁଥିଲେ, ତାହା ଆମକୁ ଅନ୍ୟାନ୍ୟ ଲେଖକଙ୍କର ଲେଖା ସହିତ ଗଭୀର ଭାବେ ପ୍ରଭାବିତ କରିଥିଲା । ସାଗରରେ ଜାହାଜ ଉପରେ ଯାତ୍ରୀ କଲାବେଳେ ଚିତ୍ତ ଭାଇ ଭିନ୍ନ ଏକ ଶୈଳୀରେ ଯେପରି ପ୍ରତ୍ୟେକ ବନ୍ଦର ଓ ସ୍ଥାନର ଇତିହାସ, ଭୂଗୋଳ ସହିତ ଦର୍ଶନ ଓ ମନସ୍ତତ୍ତ୍ୱ ପ୍ରଭୃତି ବିଷୟରେ ପାଠକମାନଙ୍କୁ ଧାରଣା ଦେଉଥିଲେ, ତାହା କେବଳ ସୁଖପାଠ୍ୟ ନଥିଲା, ଅତ୍ୟନ୍ତ ଉପାଦେୟ ମଧ୍ୟ ଥିଲା ।

ସାମାଜିକ ଜୀବନରେ ଓ ସାହିତ୍ୟ କ୍ଷେତ୍ରରେ ଚିତ୍ତ ଭାଇ କେବଳ ମିଷ୍ଟଭାଷୀ ନୁହନ୍ତି, ଅତ୍ୟନ୍ତ ସତ୍ୟବାଦୀ ମଧ୍ୟ । ଉନ୍ନତ ଚିନ୍ତା ଓ ସରଳ ଜୀବନ ଯାପନର ସେ ହେଉଛନ୍ତି ଏ ଯୁଗର ଜଣେ ସାର୍ଥକ ପ୍ରତିନିଧି । ବହୁବାର ବିଦେଶକୁ ଗସ୍ତ କରିଛନ୍ତି । ବହୁବାର ବିଦେଶୀ ଭାଷା, ସାହିତ୍ୟ ଓ ମନସ୍ତତ୍ତ୍ୱ ପ୍ରଭୃତି ବହୁବିଧ ବିଷୟରେ ସେ ଗବେଷଣା କରିଛନ୍ତି । ଶାନ୍ତିନିକେତନରେ ଅଧ୍ୟୟନ କରି କବିଗୁରୁ ରବୀନ୍ଦ୍ରନାଥଙ୍କ ଆଦର୍ଶରେ କେତେବେଳେ ସେ ଅନୁପ୍ରାଣିତ ହୋଇଛନ୍ତି ତ ଆଉ କେତେବେଳେ ଶ୍ରୀଅରବିନ୍ଦଙ୍କ ଦର୍ଶନ ଦ୍ୱାରା ଆକୃଷ୍ଟ ହୋଇ ପୂର୍ଣ୍ଣାଙ୍ଗ ଶିକ୍ଷାକୁ ସାକାର କରିବାକୁ ଉଦ୍ୟମ କରିଛନ୍ତି । ସଭା ମଞ୍ଚରେ ସତ୍ୟ କହି ବେଳେବେଳେ ସେ ଅପ୍ରିୟ ମଧ୍ୟ ହୋଇଛନ୍ତି । କିନ୍ତୁ ତିଳେ ହେଲେ ଗର୍ବ ବା ଅହଙ୍କାର ତାଙ୍କୁ ସ୍ପର୍ଶ କରି ନାହିଁ । ଥରେ ଜଳେଶ୍ୱରରେ ଦୀନକୃଷ୍ଣ ସାହିତ୍ୟ

ପରିଷଦର ବିଶ୍ବ ମିଳନ ଉତ୍ସବକୁ ସେ ବିଶିଷ୍ଟ ଅତିଥି ଭାବେ ଡାକରା ପାଇ ଯାଇଥାନ୍ତି । ଏଇ ଲେଖକ ଜଣକ ମଧ୍ୟ ସାମାନ୍ୟ ଅତିଥିଟିଏ ହୋଇଥାଏ । ସେଠା ଡାକବଙ୍ଗଳାରେ କିଛି ସମୟ ବିଶ୍ରାମ ପରେ ସଭାର ଆୟୋଜକ ଶ୍ରୀ ବିପିନ ବିହାରୀ ବିଶ୍ବାଳ ଓ ଆମେ କେତେଜଣ ସଭାସ୍ଥଳକୁ ଯିବା ପାଇଁ ଚିତ୍ତ ଭାଇଙ୍କୁ ଖୋଜୁଥାଉଁ । ଏହି ସମୟରେ ଗୋଟିଏ ଟ୍ରଲି ରିକ୍ସା ପଛରେ ଲଦି ହୋଇ ବସିଥିବା ଲୋକଙ୍କ ସାଙ୍ଗରେ ଥିବା ଚିତ୍ତ ଭାଇ ଆସି ସେଠାରେ ପହଞ୍ଚିଗଲେ । ଆରେ ଏତେ ବଡ଼ ଲେଖକ, ଅଧ୍ୟାପକ, ମଲିମୁଣ୍ଡିଆଙ୍କ ସାଙ୍ଗରେ ଟ୍ରଲି ରିକ୍ସାରେ ଲଦି ହୋଇ ଏପରି ଆସିଲେ ! ଆମ ଆଶ୍ଚର୍ଯ୍ୟର ସୀମା ନାହିଁ (ସେଠାରେ ଉଲ୍ଲେଖନୀୟ ଏହି ଯେ ସେ ଅଞ୍ଚଳରେ ମଲିମୁଣ୍ଡିଆ ଲୋକଙ୍କ ପାଇଁ ଏହିପରି ଟ୍ରଲି ରିକ୍ସାର ବହୁଳ ପ୍ରଚଳନ ଥାଏ) । ଅଧ୍ୟାପକ ବିଶ୍ବାଳ କହିପକାଇଲେ – କୁଆଡ଼େ ଯାଉଥିଲେ ? ଚିତ୍ତ ଭାଇଙ୍କ ସରଳ ଉତ୍ତର ଥିଲା – 'ଚନ୍ଦନେଶ୍ବର ସମୁଦ୍ର କୂଳ ଓ ଅନ୍ୟାନ୍ୟ ସ୍ଥାନ ଭ୍ରମଣରେ ଯାଇଥିଲି' । ଅଧ୍ୟାପକ ବିଶ୍ବାଳ କହିଲେ – ଆପଣ କହିଥିଲେ, ଆସାଯାଉର କାରଟିକୁ ନେଇ ଯାଇଥାନ୍ତେ ! 'ନା – ଏପରି ବୁଲିବାକୁ, ନିଜେ ଖୋଜୁଥିଲି' ବୋଲି ଚିତ୍ତ ଭାଇ ଉତ୍ତର ଦେଇଥିଲେ ।

ଡେନ୍‌ମାର୍କରୁ ସମବାୟ ବିଷୟରେ ଉଚ୍ଚ ଶିକ୍ଷା ଲାଭ କରି ମହାତ୍ମା ଗାନ୍ଧୀଙ୍କ ସ୍ବପ୍ନକୁ ସାକାର କରିବାକୁ ୧୯୬୬ ରେ ଅନୁଗୁଳର ଚମେଟିମୁଣ୍ଡାସ୍ଥିତ ଉତ୍ତର ମୌଳିକ ବିଦ୍ୟାଳୟର ଅଧ୍ୟକ୍ଷ ମଧ୍ୟ ଚିତ୍ତ ଭାଇ ଥିଲେ । ଭୁବନେଶ୍ବର ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରର ଅଧ୍ୟକ୍ଷ ଭାବେ ମଧ୍ୟ ସେ ସ୍ମରଣୀୟ ହୋଇ ରହିବେ । ଏତେ ବଡ଼ ଜଣେ ଡାକ୍ତରଙ୍କର ସେ ସ୍ବାମୀ ପୁଣି ପ୍ରତିଷ୍ଠିତ ବ୍ୟକ୍ତି । ତଥାପି ଖଦଡ଼ ଧୋତି ଓ ପଞ୍ଜାବୀ ପରିହିତ ସେଇ ସରଳ ବ୍ୟକ୍ତି ଜଣକ ଯେ ଓଡ଼ିଶାର ମହିମା ଧର୍ମ, ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ, ନେପାଳ ପଥେ, ସାଗର ଯାତ୍ରୀ, ଶିଳା ଓ ଶାଳ ଗ୍ରାମ, ଗଞ୍ଜାମ ମାଳରେ ସାତ ଦିନ ପ୍ରଭୃତି ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି, ସେ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ତେବେ ଏଇ ଉଚ୍ଚକୋଟିର ଲେଖକଙ୍କର ପ୍ରିୟ ଲେଖକ କିଏ ହୋଇଥିବେ ? 'ମୋର ପ୍ରିୟ ଲେଖକ' ଶୀର୍ଷକରେ 'ଡଗର'ର ସମ୍ପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ପ୍ରାୟ ୪୩ ବର୍ଷ ତଳେ ଏକ ଧାରାବାହିକ ଆରମ୍ଭ କରିଥିଲେ । ଏହି ଶୀର୍ଷକରେ ତୃତୀୟ ଲେଖାଟି ଥିଲା ଚିତ୍ତ ଭାଇଙ୍କର । ନାରୀ କବି ବିଦ୍ୟୁତ୍‌ପ୍ରଭା ଦେବୀ ତାଙ୍କର ପ୍ରିୟ ଲେଖିକା ଥିଲେ । ଲେଖାଟି ୧୯୬୬ ମସିହା ଜୁନ୍ ସଂଖ୍ୟା 'ଡଗର'ରେ ପ୍ରକାଶିତ ହୋଇଥିଲା । ଏହି ଲେଖାରେ ଚିତ୍ତ ଭାଇ ସାହିତ୍ୟ ସମ୍ପର୍କରେ ଯେଉଁ ଗଣିତ ଚିନ୍ତାଧାରା ବ୍ୟକ୍ତ କରିଥିଲେ, ତାହା ଏବେ ବି ଖୁବ୍ ପ୍ରଭାବଶାଳୀ ଓ ଅସମାନ୍ତରାଳ ବୋଲି ମନେ ହୁଏ ।

ଚିତ୍ତ ଭାଇ ଲେଖିଥିଲେ – ସାହିତ୍ୟର କ୍ଷେତ୍ରକୁ ଯଦି ଗୋଟାଏ ଯୁଦ୍ଧ କ୍ଷେତ୍ର ବୋଲି ଧରି ନେବାରେ ଖୁବ୍ ବେଶୀ ଅବାନ୍ତରତା ନହୁଏ, ତେବେ ମୁଁ କହିବି – ଓଡ଼ିଆ ସାହିତ୍ୟରେ ଏବେ ମଧ୍ୟ ଅନେକ ରଥୀ ଓ ମହାରଥୀ ରହିଛନ୍ତି । ସଭା ଓ ପତ୍ରପତ୍ରିକାର ମଞ୍ଚରେ ଆମ ଓଡ଼ିଶାରେ ବି ଚମତ୍କାର ଯୁଦ୍ଧ ଚାଲିଛି । ବାଣ, ରୋଷଣୀ ଓ ଚଢ଼ା ଉତରା ଲାଗିଛି । ଗୌରବ, ଗରିମା, ଈର୍ଷା ଓ ଅସୂୟାର ନାନା ଅଭିବ୍ୟଞ୍ଜନା – ଅସ୍ତ୍ର ମରା ହୋଇ ଶିବିର ଶିବିର ଭିତରେ ବେଶ୍ ଯୁଦ୍ଧ ଆରମ୍ଭ ହୋଇଯାଇଛି । ଅତି ପୁରାତନ ଓ ପୁରାତନ, ପ୍ରବୀଣ ଓ ନବୀନଙ୍କ ଭିତରେ ଭିଡ଼ାଭିଡ଼ି ଲାଗିଛି । ........କିନ୍ତୁ ଏ ଯୁଦ୍ଧର ବାହାରେ ଯେଉଁମାନେ ଅଛନ୍ତି, ସେମାନେ ଏ ଯୁଦ୍ଧ ଦେଖି ପ୍ରମାଦ ପଡ଼ୁଛନ୍ତି । ମୁଁ ସେହିମାନଙ୍କ ଭିତରୁ ଜଣେ । ମୁଁ ଦେଖୁଛି, ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅବଶ୍ୟ ରଥୀ, ମହାରଥୀର ଅଭାବ ନାହିଁ, କିନ୍ତୁ ସାହିତ୍ୟ ସେବାରେ ଯଥେଷ୍ଟ ଅଭାବ ରହିଛି । ସାହିତ୍ୟକୁ ଅନେକ ବ୍ୟକ୍ତି ପ୍ରଧାନତଃ ଗୋଟିଏ ବିନୋଦନ ପ୍ରୟାସ (Hobby) ବା ଗୋଟିଏ ଉପଜୀବିକା ହିସାବରେ ଧରିଛନ୍ତି, କିନ୍ତୁ ବ୍ରତ ବୋଲି ଗ୍ରହଣ କରି ନାହାନ୍ତି । ........ଏ ଦେଶରେ ବଡ଼ ସରକାରୀ କର୍ମଚାରୀ ସାହିତ୍ୟ ଲେଖୁଛନ୍ତି, ବଡ଼ ରାଜା ବା ଜମିଦାର ସାହିତ୍ୟ ଲେଖୁଛନ୍ତି, ବଡ଼ ଅଧ୍ୟାପକ ସାହିତ୍ୟ ଲେଖୁଛନ୍ତି, କିନ୍ତୁ ସାହିତ୍ୟକୁ ବ୍ରତ ହିସାବରେ ମାନିଲେ ଯେଉଁ ଶୃଙ୍ଖଳା ଦରକାର, ତାହା ସେମାନଙ୍କର ନାହିଁ । ଓଡ଼ିଶାର ଅଧିକାଂଶ ଲେଖକ ପ୍ରଥମେ ସରକାରୀ କର୍ମଚାରୀ, ଅଧ୍ୟାପକ ବା ରାଜନୀତିକ, ପରେ ସାହିତ୍ୟିକ । ଯିଏ ଯେଉଁ କ୍ଷେତ୍ରରୁ ଆସି ସାହିତ୍ୟିକ କମଳ–ବନରେ ଆପଣାର ଭାଗ୍ୟ ପରୀକ୍ଷା କରିବାକୁ ପହଞ୍ଚିଛନ୍ତି, ସିଏ ଆପଣା କ୍ଷେତ୍ରରୁ ଅନେକ କୁପ୍ରବୃତ୍ତି ମଧ୍ୟ ନେଇ ଆସିଛନ୍ତି । ବାହାର ସଂସାରର ହୀନ ପ୍ରତିଯୋଗିତା ପରି ଏଠି ମଧ୍ୟ ସେମାନେ ଅସୁସ୍ଥ ପ୍ରତିଯୋଗିତା ଆରମ୍ଭ କରି ଦେଇଛନ୍ତି । ଆପଣା ସୁନାକୁ ସବୁଠାରୁ ଭଲ ବୋଲି ପ୍ରମାଣିତ କରିବା ଲାଗି ମତ୍ତ ବଣିକ ପରି ସେମାନେ ସାହିତ୍ୟର ପଦ୍ମବନକୁ ଛାରଖାର କରି ପକାଉଛନ୍ତି । ସରକାରୀ ଅମଲା–ରାଜ୍ୟରେ ଦଳାଦଳି ଚାଲିଲା ପରି ସାହିତ୍ୟ କ୍ଷେତ୍ରରେ ମଧ୍ୟ ବେଶ୍ ଦଳାଦଳି ଚାଲିଛି । ଏଠି ଉଦାରତାଠାରୁ ଉଗ୍ରତା ଅଧିକ ରହିଛି । ଦେଶ ଓ ଜାତିକୁ ଉଚିତ ନେତୃତ୍ୱ ଦେବାର ଦାୟିତ୍ୱବୋଧ ଯେତେ ନାହିଁ, ଲୋକପ୍ରିୟ ହେବାର ଲାଳସା ତା'ଠାରୁ ଅଧିକ ଅଛି । ସାହିତ୍ୟକୁ ସାଧନା ବୋଲି ଗ୍ରହଣ କରି ଓ ଆପଣାକୁ ସେହି ସାଧନାର ଶୃଙ୍ଖଳରେ ରଖି ଆପଣାର ଦୃଷ୍ଟିକୁ ଅଧିକ ବିକଶିତ ଓ ପ୍ରଶସ୍ତ କରିବାର ଉଦ୍ୟମ ଯେତେ ନାହିଁ, ଆପଣାର ସ୍ତାବକ ଓ ସ୍ମରଣ ସଭା ଦ୍ୱାରା ଅନ୍ୟ ପକ୍ଷକୁ ଦାବି ଦେବାର ଉତ୍ତେଜନା ତା'ଠାରୁ ଅଧିକ ଅଛି ।

ଚିତ୍ତ ଭାଇଙ୍କ ପରି ଜଣେ ଦାର୍ଶନିକ ଓ ସ୍ୱାଧୀନତା ସଂଗ୍ରାମୀ ଏବେ ବି କୋଦାଳରେ ଦୈନିକ ମାଟି ହାଣନ୍ତି । ବିଭିନ୍ନ ଗ୍ରାମରେ ଥିବା ଅରବିନ୍ଦ ପାଠଚକ୍ରରୁ ଡାକରା ଆସିଲେ, ଚିତ୍ତ ଭାଇ ପାଠଚକ୍ରରେ ଶୁଦ୍ଧ ଓଡ଼ିଆରେ ବକ୍ତୃତା ଦିଅନ୍ତି ଅନର୍ଗଳ ଆଉ ସେଇ ଗ୍ରାମରେ ଦିନେ ଦୁଇଦିନ ରହିଯାଇ ଗ୍ରାମ ସର୍ଭେଇ କରିଥାନ୍ତି । ଅଦ୍ଭୁତ ତାଙ୍କର ଜୀବନ, ଅନନ୍ୟ ତାଙ୍କର କାମ । ଧନ୍ୟ ଚିତ୍ତ ଭାଇ ଧନ୍ୟ !

---

ଡି/୪, କ୍ଷେତ୍ରଭି କଲୋନୀ,
ଖାରବେଳ ନଗର, ଭୁବନେଶ୍ବର–୧

# ଓଡ଼ିଶାରେ ଶିଳ୍ପ ବିପ୍ଳବ

ଶ୍ରୀ ଶିତିକାନ୍ତ ଷଡ଼ଙ୍ଗୀ

ପୃଥିବୀର ଯେଉଁ ଦେଶ ଶିଳ୍ପ କ୍ଷେତ୍ରରେ ଯେତେ ଉନ୍ନତ, ସେ ଦେଶର ଆର୍ଥିକ ସ୍ଥିତି ସେତେ ସୁଦୃଢ଼ । ଦେଶରେ ଉପଲବ୍ଧ କୃଷିଜାତ, ଖଣିଜ, ସାମୁଦ୍ରିକ ଓ ଜଙ୍ଗଲଜାତ କଞ୍ଚାମାଲକୁ ଯାନ୍ତ୍ରିକ ପଦ୍ଧତିରେ ପ୍ରକ୍ରିୟାକରଣ କରି ଉତ୍ପାଦିତ ସାମଗ୍ରୀକୁ ବର୍ଦ୍ଧିତ ମୂଲ୍ୟରେ ନିଜ ଦେଶ ମଧ୍ୟରେ ତଥା ବିଦେଶରେ ବିକ୍ରୀ କରାଯାଇ ପାରିଲେ ପ୍ରଚୁର ଆୟ ମିଳି ପାରିଥାଏ । ଏହାଫଳରେ ମୁଣ୍ଡ ପିଛା ଆୟ ବୃଦ୍ଧି ହେବା ସହ ବହୁ ଲୋକଙ୍କୁ ନିଯୁକ୍ତି ମିଳିଥାଏ ।

ଆମ ଭାରତବର୍ଷ ବିପୁଳ ପ୍ରାକୃତିକ ସମ୍ପଦର ଅଧିକାରୀ ହୋଇଥିଲେ ମଧ୍ୟ ଦୀର୍ଘ ଦିନର ପରାଧୀନତା ଯୋଗୁ ଶିଳ୍ପ କ୍ଷେତ୍ରରେ କୌଣସି ପ୍ରଗତି ହୋଇ ପାରିନଥିଲା । ବ୍ରିଟିଶ ଶାସକଗଣ ଭାରତରେ ଶିଳ୍ପ ପ୍ରତିଷ୍ଠା ପାଇଁ କୌଣସି ଗୁରୁତ୍ୱ ଦେଇନଥିଲେ । ଅପର ପକ୍ଷରେ ଭାରତରୁ ପ୍ରଚୁର ପରିମାଣରେ କଞ୍ଚାମାଲ ନିଜ ଦେଶକୁ ବୋହି ନେଇ ସେଠାରେ ଶିଳ୍ପ ପ୍ରତିଷ୍ଠା କରୁଥିଲେ ଏବଂ ଶିଳ୍ପଜାତ ସାମଗ୍ରୀକୁ ଆମ ଦେଶରେ ବିକ୍ରିକରି ଜନସାଧାରଣଙ୍କୁ ଶୋଷଣ କରୁଥିଲେ ।

ସ୍ୱାଧୀନତା ପୂର୍ବରୁ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ଆଦୌ ହୋଇନଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ଓଡ଼ିଶାରେ କେତେ ଗୋଟି ଶିଳ୍ପ କାରଖାନା ମୁଣ୍ଡ ଟେକିଲା । ସେଗୁଡ଼ିକ ମଧ୍ୟରେ ଯୋଡା ଓ ରାୟଗଡ଼ାଠାରେ ଫେରୋ ମାଙ୍ଗାନିଜ କାରଖାନା, ରାଜଗାଙ୍ଗପୁରଠାରେ ସିମେଣ୍ଟ କାରଖାନା, ଚଉଦ୍ୱାରଠାରେ ଟିଟିଲାଗଡ଼ ପେପର ମିଲ୍ ଓ କଳିଙ୍ଗ ଟ୍ୟୁବ୍ କାରଖାନା ଏବଂ ହୀରାକୁଦଠାରେ ଆଲୁମିନିୟମ୍ କେବୁଲ କାରଖାନା ଅନ୍ୟତମ । ଏହି ସମୟରେ ଲୋକମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା ଏବଂ ବ୍ୟାଙ୍କଗୁଡ଼ିକ ମଧ୍ୟ ଜାତୀୟକରଣ ହୋଇ ନଥିଲେ । ଯାହାଫଳରେ ବେସରକାରୀ ଉଦ୍ୟୋଗରେ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ସମ୍ଭବ ହୋଇ ପାରିନଥିଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ଶିଳ୍ପ ଉନ୍ନୟନ ଦିଗରେ ଅଧିକ ଦୃଷ୍ଟି ଦିଆଯାଇଥିଲା । ଏହି ସମୟରେ ହୀରାକୁଦ ଓ ମାଛକୁଣ୍ଡଠାରେ ଜଳବିଦ୍ୟୁତ ପ୍ରକଳ୍ପ କରାଯାଇ ବିଦ୍ୟୁତ୍ ଉତ୍ପାଦନ ବୃଦ୍ଧି କରାଗଲା । ରେଳରାସ୍ତା ଓ ସଡ଼କ ରାସ୍ତାର ପ୍ରସାର କରାଗଲା । ଏହି ଯୋଜନା କାଳରେ ସରକାରୀ ପ୍ରୋତ୍ସାହନରେ କେତେଗୋଟି ଯାନ୍ତ୍ରିକ ଟାଇଲ୍ କାରଖାନା, କଟକଠାରେ ଯୋତା କାରଖାନା ଏବଂ ବେଲପାହାଡ଼ ଓ ଲାଠିକଟାଠାରେ ଅଗ୍ନିଜିତ୍ କାରଖାନା ପ୍ରତିଷ୍ଠା କରାଯାଇଥିଲା । ରାଜ୍ୟରେ ପ୍ରାୟ ୩୦୦ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ବେସରକାରୀ ଉଦ୍ୟୋଗରେ ମୁଣ୍ଡ ଟେକି ଉଠିଥିଲା । ସେଗୁଡ଼ିକ ମଧ୍ୟରେ ଗୁଡ଼ଚକଳ, ତେଲକଳ, କରତକଳ, ଆଲୁମିନିୟମ୍ ବାସନ କାରଖାନା ଓ କରତକଳ ଇତ୍ୟାଦି ମୁଖ୍ୟ ଥିଲା ।

ତୃତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ରାଜ୍ୟରେ ଶିଳ୍ପ ପ୍ରସାରକୁ ଆଗେଇ ନେବା ପାଇଁ କେତେଗୋଟି ନିଗମ ପ୍ରତିଷ୍ଠା କରାଗଲା । ଏହି ସମୟରେ ଇଣ୍ଡଷ୍ଟ୍ରିଆଲ୍ ଡେଭେଲପ୍‌ମେଣ୍ଟ କର୍ପୋରେସନ୍‌ର ବରଗଡ଼ଠାରେ ସିମେଣ୍ଟ କାରଖାନା, ହୀରାକୁଦଠାରେ ରୋଲିଂମିଲ୍ ଓ ଚଉଦ୍ୱାରଠାରେ ଟାଇଲ୍ କାରଖାନା ପ୍ରତିଷ୍ଠା କରାଯାଇଥିଲା । ଏହି ଯୋଜନା କାଳରେ କ୍ଷୁଦ୍ରଶିଳ୍ପ ସଂସ୍ଥାମାନଙ୍କ ସଂଖ୍ୟା ପ୍ରାୟ ୧୦୦୦କୁ ବୃଦ୍ଧି ପାଇ ଥିଲା ।

ଚତୁର୍ଥ ପଞ୍ଚବାର୍ଷିକ ଯୋଜନାରେ ବ୍ୟାଙ୍କଗୁଡ଼ିକର ଜାତୀୟକରଣ ଯୋଗୁଁ ଶିଳ୍ପ ପ୍ରସାରରେ ତତ୍ପରତା ଦେଖାଗଲା । ବ୍ୟବସାୟିକ ବ୍ୟାଙ୍କ୍‌ମାନେ ଶିଳ୍ପ କ୍ଷେତ୍ରରେ ପୁଞ୍ଜି ବିନିଯୋଗ ପାଇଁ ଇଚ୍ଛା ପ୍ରକାଶ କଲେ ଏବଂ ବେସରକାରୀ ଉଦ୍ୟୋଗରେ ବହୁତଗୁଡ଼ିଏ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ହେଲା । ଏହି ଯୋଜନା କାଳରେ ରାଜ୍ୟରେ ପ୍ରାୟ ୨୦୦୦ ଗୋଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ହୋଇ ପାରିଥିଲା ।

ପଞ୍ଚମ ପଞ୍ଚବାର୍ଷିକ ଯୋଜନା କାଳରେ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠାର ଶୁଭାରମ୍ଭ ହେଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସମୟରେ ରାଜ୍ୟ ସରକାର ବିଧିବଦ୍ଧଭାବେ ଏକ ଶିଳ୍ପ ନୀତି ୧୯୭୭–୧୯୭୯ ପ୍ରଣୟନ କରିଥିଲେ । ଏହି ଶିଳ୍ପ ନୀତି ଅଧୀନରେ ବିଭିନ୍ନ ପ୍ରକାର ପ୍ରୋତ୍ସାହନ ଯୋଗାଇ ଦେବାର ବ୍ୟବସ୍ଥା କରାଗଲା । ଶିଳ୍ପୋଦ୍ୟୋଗୀମାନଙ୍କୁ ଆକୃଷ୍ଟ କରିବା ପାଇଁ ଅନେକଗୁଡ଼ିଏ ସୁବିଧା ସୁଯୋଗ ଘୋଷଣା କରାଗଲା । କେନ୍ଦ୍ର ସରକାରଙ୍କ ନିଷ୍ପତ୍ତି ଅନୁଯାୟୀ ରାଜ୍ୟର ସମସ୍ତ ଜିଲ୍ଲାରେ ଜିଲ୍ଲା ଶିଳ୍ପ କେନ୍ଦ୍ର (ଡି଼ଃ ଆଇଃ ସିଃ) ପ୍ରତିଷ୍ଠା କରାଗଲା ।

ସମସ୍ତ ଅନୁକୂଳ ବାତାବରଣ ଯୋଗୁ କେବଳ ଏହି ଯୋଜନା କାଳରେ ୬୦୦୦ରୁ ଅଧିକ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ହୋଇ ପାରିଥିଲା । ପଞ୍ଚମ ଯୋଜନା ଶେଷ ସୁଦ୍ଧା ରାଜ୍ୟରେ ୯,୧୧୯ ଗୋଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ହୋଇ ପ୍ରାୟ ୬୮୯୫-୫୪ ଲକ୍ଷ ଟଙ୍କା ପୁଞ୍ଜି ବିନିଯୋଗ କରାଯାଇ ଥିଲା । ମୋଟ୍ ୭୫,୭୯୮ ଜଣଙ୍କୁ ଶିଳ୍ପ ସଂସ୍ଥାମାନଙ୍କରେ ନିଯୁକ୍ତି ଦିଆଯାଇ ଥିଲା ।

ଷଷ୍ଠ ଯୋଜନା କାଳରେ ରାଜ୍ୟ ସରକାର ଏକ ନୂଆ ଶିଳ୍ପ ନୀତି ୧୯୮୦ ପ୍ରଣୟନ କରି ଆହୁରି ଅଧିକ ପ୍ରୋତ୍ସାହନ ଯୋଗାଇ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇ ଥିଲେ । ଫଳରେ ରାଜ୍ୟରେ କେବଳ ଏହି ଯୋଜନା କାଳରେ ୧୪,୩୧୮ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ପ୍ରତିଷ୍ଠା ହୋଇ ୧୩,୩୫୨·୧୧ ଲକ୍ଷ ଟଙ୍କା ପୁଞ୍ଜି ବିନିଯୋଗ ହୋଇଥିଲା ଏବଂ ୧,୦୬,୨୯୩ ଜଣଙ୍କୁ ନିଯୁକ୍ତି ଦିଆ ଯାଇଥିଲା ।

ରାଜ୍ୟ ସରକାରଙ୍କ ଅଧିକ ଆକର୍ଷଣୀୟ ଶିଳ୍ପନୀତି ୧୯୮୬ ଦ୍ୱାରା ଆକୃଷ୍ଟ ହୋଇ ଅନ୍ୟ ରାଜ୍ୟରୁ ଶିଳ୍ପୋଦ୍ୟୋଗୀମାନେ ଓଡ଼ିଶାକୁ ଆସିବାକୁ ଲାଗିଲେ । ଫଳରେ ସପ୍ତମ ଯୋଜନା କାଳରେ ୧୭,୪୦୮ ଗୋଟି କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା ହୋଇ ୨୩,୩୦୯·୨୫ ଲକ୍ଷ ଟଙ୍କା ପୁଞ୍ଜି ବିନିଯୋଗ ହୋଇ ପାରିଥିଲା ଏବଂ ପ୍ରାୟ ୮୩,୧୯୫ ଜଣଙ୍କୁ ନିଯୁକ୍ତି ଦିଆଯାଇ ପାରିଥିଲା ।

ରାଜ୍ୟରେ ଶିଳ୍ପର ପ୍ରସାର ପାଇଁ ରାଜ୍ୟ ସରକାର ଅନେକଗୁଡ଼ିଏ ଶିଳ୍ପନୀତି ଘୋଷଣା କରି ସାରିଛନ୍ତି । ସେଗୁଡ଼ିକ ହେଲା–ଶିଳ୍ପନୀତି–୧୯୮୯, ଶିଳ୍ପନୀତି–୧୯୯୨ ଏବଂ ଶିଳ୍ପନୀତି–୧୯୯୬ । ରାଜ୍ୟରେ ଶିଳ୍ପୋଦ୍ୟୋଗୀମାନଙ୍କୁ ସେବା ଯୋଗାଇ ଦେବା ପାଇଁ ସରକାର ବିଭିନ୍ନ ନିଗମ ଓ ବିଭାଗମାନ ପ୍ରତିଷ୍ଠା କରିଛନ୍ତି । ସେଗୁଡ଼ିକ ମଧ୍ୟରେ ଜିଲ୍ଲା ଶିଳ୍ପ କେନ୍ଦ୍ର, ରାଜ୍ୟ ଅର୍ଥ ନିଗମ, ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ, ବୟନ ଶିଳ୍ପ ନିର୍ଦ୍ଦେଶାଳୟ, ରପ୍ତାନୀ ଓ ବଜାର ନିର୍ଦ୍ଦେଶାଳୟ (ଇ: ପି: ଏମ୍:), ଖଣି ଓ ଭୂତତ୍ତ୍ୱ ନିର୍ଦ୍ଦେଶାଳୟ, ଖଣି ନିଗମ, ଶିଳ୍ପ ଭିତ୍ତିଭୂମି ଉନ୍ନୟନ ନିଗମ (ଇଡ୍‌କୋ), ଶିଳ୍ପ ବିକାଶ ଓ ପୁଞ୍ଜି ବିନିଯୋଗ ନିଗମ (ଇପିକଲ୍), ହସ୍ତଶିଳ୍ପ ନିଗମ, ହସ୍ତ ଓ କୁଟୀର ଶିଳ୍ପ ନିର୍ଦ୍ଦେଶାଳୟ ଓ ଶିଳ୍ପ ନିର୍ଦ୍ଦେଶାଳୟ ଅନ୍ୟତମ । ସମସ୍ତ ପ୍ରକାର ପ୍ରୋତ୍ସାହନର ଫଳ ସ୍ୱରୂପ ରାଜ୍ୟରେ ୧୯୯୭–୯୮ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୫୬,୮୭୩ ଗୋଟି କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା ହୋଇ ୧,୦୪,୧୩୨·୦୨ ଲକ୍ଷ ଟଙ୍କା ପୁଞ୍ଜି ବିନିଯୋଗ କରାଯାଇ ପାରିଛି ଏବଂ ୩,୮୨,୦୧୯ ଜଣଙ୍କୁ ନିଯୁକ୍ତି ଦିଆଯାଇ ପାରିଛି ।

ରାଜ୍ୟ ସରକାରଙ୍କ ଶିଳ୍ପନୀତି ୧୯୯୬ ବର୍ତ୍ତମାନ ବଳବତ୍ତର ରହିଛି । ଏହି ଶିଳ୍ପ ନୀତି ଅଧୀନରେ ପୁଞ୍ଜି ବିନିଯୋଗ ଅନୁଦାନ (ସବ୍‌ସିଡ଼ି), ବିକ୍ରି କର ଛାଡ଼, ବିଦ୍ୟୁତ୍ ଶୁଳ୍କ ଛାଡ଼, ପଣ୍ୟ କର ଛାଡ଼ ଓ ସୁବିଧା ଦରରେ ଜମି ଯୋଗାଣ ଇତ୍ୟାଦି ପ୍ରୋତ୍ସାହନମାନ ଘୋଷଣା କରାଯାଇଛି । ରାଜ୍ୟରେ ଆହୁରି ଅନେକ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠାର ସମ୍ଭାବନା ରହିଛି । ଆମର ଶିକ୍ଷିତ ବେକାର ଯୁବକ ଯୁବତୀମାନେ ଶିଳ୍ପ ପ୍ରତିଷ୍ଠା ପାଇଁ ଆଗ୍ରହ ପ୍ରକାଶ କଲେ ନିଜେ ଆତ୍ମ–ନିଯୁକ୍ତି ପାଇବା ସହ ବହୁ ଲୋକଙ୍କୁ ନିଯୁକ୍ତି ଦେଇ ପାରିବେ ଏବଂ ରାଜ୍ୟର ମୁଣ୍ଡ ପିଛା ଆୟ ବୃଦ୍ଧି କରି ପାରିବେ, ଏଥିରେ ଟିକେ ମାତ୍ର ସନ୍ଦେହ ନାହିଁ ।

---

ପରିସ୍ରୁଙ୍ଖକ (ଶଣ),
ଜିଲ୍ଲା ଶିଳ୍ପ କେନ୍ଦ୍ର,
ରସୁଲଗଡ଼, ଭୁବନେଶ୍ୱର

## ଚାଷୀଙ୍କୁ ଋଣ ସୁବିଧା ପାଇଁ ରାଜ୍ୟରେ କିଷାନ୍ କ୍ରେଡିଟ୍‌ର କାର୍ଡ ପ୍ରଚଳନ

ଚଳିତ ରବି ଋତୁଠାରୁ ରାଜ୍ୟର ସମସ୍ତ କୃଷିଋଣ ସମବାୟ ସମିତିରେ କିଷାନ୍ କ୍ରେଡିଟ୍ କାର୍ଡ ରାଜ୍ୟ ସମବାୟ ବ୍ୟାଙ୍କ ପକ୍ଷରୁ ପ୍ରଚଳନ କରାଯାଇ ଋଣ ଲଗାଣ ପଦ୍ଧତିକୁ ସରଳ କରାଯାଇଅଛି । ଏହି କ୍ରେଡିଟ୍ କାର୍ଡ ଗ୍ରାମାଞ୍ଚଳରେ କାର୍ଯ୍ୟ କରୁଥିବା ସମସ୍ତ ସେବା ସମବାୟ ସମିତି, ବୃହଦାକାର ବହୁମୁଖୀ କୃଷି ସମବାୟ ସମିତି ତଥା କୃଷକ ସେବା ସମିତିର ସଭ୍ୟମାନଙ୍କୁ ପ୍ରଦାନ କରାଯାଇଅଛି । ଚାଷ ପାଇଁ ଆବଶ୍ୟକ ସମସ୍ତ ପ୍ରକାର ଋଣ, ରାସାୟନିକ ସାର, ବିହନ, ପୋକମରା ଔଷଧ ଇତ୍ୟାଦି ଏହି କ୍ରେଡିଟ୍ କାର୍ଡ ମାଧ୍ୟମରେ ସଂପୃକ୍ତ ସମବାୟ ସମିତିରୁ ମିଳିପାରିବ ଏବଂ ନଗଦ ଅର୍ଥ ଋଣ କେନ୍ଦ୍ର ସମବାୟ ବ୍ୟାଙ୍କର ଶାଖାରୁ ମିଳିପାରିବ । ଏହା ବ୍ୟତୀତ କୃଷି ଯନ୍ତ୍ରପାତି, ଜଳସେଚନ ପାଇଁ ପଂପ୍, ପାୱାରଟିଲର, ପଶୁପାଳନ, ଗୋପାଳନ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଧନ୍ଦା ପାଇଁ ମାଧ୍ୟମ ଓ ଦୀର୍ଘମିଆଦି ଋଣ ଏହି କାର୍ଡ ମାଧ୍ୟମରେ ମିଳିପାରିବ । କ୍ରେଡିଟ୍ କାର୍ଡର ସମୟସୀମା ଏକାଦିକ୍ରମେ ତିନି ବର୍ଷ ହୋଇଥିବାରୁ କିସ୍ତି ଅନୁସାରେ ଋଣ ପରିଶୋଧ କରୁଥିଲେ ପ୍ରତ୍ୟେକ ବର୍ଷ ଖରିଫ୍ ଏବଂ ରବି ଋତୁରେ ନୂଆ ଋଣ ପାଇଁ ମଂଜୁରୀ ଆବଶ୍ୟକ ପଡିବ ନାହିଁ ।

କିଷାନ କ୍ରେଡିଟ କାର୍ଡ ବ୍ୟତୀତ ସମବାୟ ସମିତିର ସଭ୍ୟମାନଙ୍କୁ ଚେକ୍ ବହି ମଧ୍ୟ ଯୋଗାଇ ଦିଆଯିବ । ଏଣିକି ଏହି ଚେକ୍ ବହି ବ୍ୟବହାର କରି ସଭ୍ୟମାନେ ଯେକୌଣସି ସମୟରେ ଋଣ ଶୁଝି ପୁନରାୟ ଋଣ ନେଇ ପାରିବେ । ତେଣୁ ଯେଉଁ ଚାଷୀ ଭାଇମାନେ ଏପର୍ଯ୍ୟନ୍ତ ସମିତିର ସଭ୍ୟ ହୋଇ ନାହାନ୍ତି, ସେମାନେ ଯଥାଶୀଘ୍ର ସମିତିର ସଭ୍ୟଭୁକ୍ତ ହୋଇ ଋଣ ମଂଜୁରୀ ପାଇଁ ଆବେଦନ କରିବା ନିମନ୍ତେ ପରାମର୍ଶ ଦିଆଯାଇଛି । ସେହିପରି ଯେଉଁ ଚାଷୀ ଭାଇମାନେ ସଭ୍ୟ ହୋଇଛନ୍ତି ମାତ୍ର ଋଣ ଦରଖାସ୍ତ କରି ନାହାନ୍ତି ସେମାନେ ମଧ୍ୟ ରବି ଚାଷ ପାଇଁ ସମିତିରେ ଋଣ ମଂଜୁରୀ ପାଇଁ ଆବେଦନ କରିବା ଆବଶ୍ୟକ । ପୂର୍ବରୁ ନେଇଥିବା ଋଣ ଖିଲାପ କରିଥିଲେ ତାହା ଶୀଘ୍ର ପରିଶୋଧ କଲେ ରବି ଚାଷ ପାଇଁ ଏହି ବ୍ୟବସ୍ଥାରେ ନୂଆ ଋଣ ଦେବା ପାଇଁ ବ୍ୟବସ୍ଥା କରାଯାଇଛି ବୋଲି ରାଜ୍ୟ ସମବାୟ ବ୍ୟାଙ୍କ ସୂତ୍ରରୁ ପ୍ରକାଶ ।

# କାଶ୍ମୀର ସମସ୍ୟା–ଏକ ଆହ୍ୱାନ

ଡଃ କରୁଣାକର ବିଶୋଇ

୧୯୪୭ ମସିହାରେ ଆମ ଦେଶ ସ୍ୱାଧୀନତା ଲାଭ କଲେ ମଧ୍ୟ ଅଖଣ୍ଡ ଭାରତ ହୋଇ ରହିଲା ନାହିଁ । ବହୁ ପୂର୍ବରୁ ହିନ୍ଦୁ ଓ ମୁସଲମାନ୍‌ମାନଙ୍କ ମଧ୍ୟରେ ବିଷ ମଞ୍ଜି ଇଂରେଜ ଶାସକମାନଙ୍କ ଦ୍ୱାରା ପୋତି ଦିଆଯାଇଥିଲା । ଫଳରେ ଅଖଣ୍ଡ ଭାରତ 'ଭାରତ' ଓ 'ପାକିସ୍ଥାନ୍' ନାମରେ ଦୁଇଟି ଦେଶରେ ପରିଣତ ହେଲା । ଅବଶ୍ୟ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ କ୍ଷମତାରେ ଥିଲେ ଆହୁରି, କିଛି ବର୍ଷ ଆମକୁ ଇଂରେଜମାନଙ୍କ ଦାସତ୍ୱ ସ୍ୱୀକାର କରିବାକୁ ପଡ଼ିଥାନ୍ତା ।

ସ୍ୱାଧୀନତା ଲାଭ ପରେ ସରକାର ସମ୍ବିଧାନ ପ୍ରଣୟନ ଓ ଦେଶୀୟ ରାଜ୍ୟମାନଙ୍କୁ ଏକତ୍ର କରି ଭାରତ ସହିତ ମିଶାଇବା କାର୍ଯ୍ୟ ହାତକୁ ନେଇଥିଲେ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଭାରତ ଏକ ସାଧାରଣତନ୍ତ୍ରରେ ପରିଣତ ହୋଇଥିଲା । ଲୌହମାନବ ଓ ତଦାନୀନ୍ତନ ଉପ–ପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଦେଶପ୍ରୀତିରେ ଉଦ୍‌ବୁଦ୍ଧ ହୋଇ ଦେଶୀୟ ରାଜ୍ୟ ଏକତ୍ରୀକରଣ କରିଥିଲେ । ୬୨୪ଟି ରାଜ୍ୟ ମଧ୍ୟରୁ ୧୦ଟି ପାକିସ୍ଥାନ ସହ ଓ ୬୧୨ଟି ଭାରତ ସହ ମିଶିଥିଲେ । ଆଉ ଦୁଇଟି ରାଜ୍ୟ ହାଇଦ୍ରାବାଦ, ଜାମ୍ମୁ ଓ କାଶ୍ମୀର ପ୍ରଥମେ କେଉଁଥିରେ ମିଶି ନଥିଲେ । କାଶ୍ମୀରର ରାଜା ହିନ୍ଦୁ ଥିଲେ । କିନ୍ତୁ ପ୍ରଜାମାନେ ମୁଖ୍ୟତଃ ମୁସଲମାନ୍ । ହାଇଦ୍ରାବାଦ ନିଜାମ୍ ଥିଲେ ମୁସଲମାନ୍ ଓ ଜନସାଧାରଣ ହିନ୍ଦୁ ଥିଲେ । ସ୍ୱାଧୀନତା ପୂର୍ବରୁ ଭାରତର ବଡ଼ ଲାଟ୍ ମାଉଣ୍ଟବେଟନ ଏହି ଦୁଇ ରାଜ୍ୟକୁ ଭାରତ ଓ ପାକିସ୍ଥାନରେ ମିଶିବାକୁ ବାଧ୍ୟ ନକରି ଅଲଗା ରହି ବର୍ଷେ ପର୍ଯ୍ୟନ୍ତ ପରିସ୍ଥିତି ଅନୁଧ୍ୟାନ କରିବାକୁ ସୁବିଧା ଦେଇଥିଲେ ଓ ନିଶ୍ଚଳ ଚୁକ୍ତି ସ୍ୱାକ୍ଷର କରିଥିଲେ । ବର୍ଷକ ମଧ୍ୟରେ ହାଇଦ୍ରାବାଦ ଭାରତରେ ମିଶି ଯାଇଥିଲା । କିନ୍ତୁ ବିଖଣ୍ଡିତ ହେବାର ଦୁଇମାସ ମଧ୍ୟରେ ୧୯୪୭ ଅକ୍ଟୋବର ମାସରେ କାଶ୍ମୀରକୁ ଜବରଦସ୍ତ ତାଙ୍କ ଦେଶରେ ମିଶାଇ ଦେବାଲାଗି ପାକିସ୍ଥାନ ଯୁଦ୍ଧ ଘୋଷଣା କରିଥିଲା । କାଶ୍ମୀର ରାଜା ହରିସିଂ ପାକିସ୍ଥାନର ଆକ୍ରମଣରେ ଆତଙ୍କିତ ହୋଇ ଭାରତର ସାହାଯ୍ୟ ପ୍ରାର୍ଥନା କରିଥିଲେ । ଭାରତର ହସ୍ତକ୍ଷେପ ଫଳରେ ଆକ୍ରମଣ ବନ୍ଦ ରହିଲେ ମଧ୍ୟ, ଭାରତର ଦୂରଦର୍ଶିତା ଅଭାବ ରହିଲା ଭଳି ମନେହୁଏ । ସେହି, ସୁଯୋଗରେ ଭାରତରେ କାଶ୍ମୀରକୁ ମିଶାଇ ଦିଆଯାଇ ପାରିଥାନ୍ତା କିନ୍ତୁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁ ଲୋକମତ ଗଣିଆରେ ଶେଷ ନିଷ୍ପତ୍ତି ନିଆଯିବା ଘୋଷଣା କରିଥିଲେ । ଦ୍ୱିତୀୟ ଭୁଲ୍ ଭାରତର ହେଲା ମହାତ୍ମାଗାନ୍ଧୀଙ୍କ ପରାମର୍ଶରେ ଆନ୍ତର୍ଜାତିକ ପଞ୍ଚାୟତ ଜାତିସଂଘର ଦ୍ୱାରସ୍ଥ ହେବା ଓ ୧୯୪୯ ମସିହା ଜାନୁଆରୀ ୧ ତାରିଖରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ବିରତି ସ୍ୱାକ୍ଷର କରିବା । ଅଖଣ୍ଡ ଭାରତର ଅଂଶ ବିଶେଷ ରୂପେ କାଶ୍ମୀର ସମସ୍ୟାକୁ ଆନ୍ତର୍ଜାତିକ ସ୍ତରକୁ ନେବାର କିଛି ଆବଶ୍ୟକତା ନଥିଲା । ମୁସଲମାନ୍ ସଂଖ୍ୟାଧିକ କାଶ୍ମୀର ପାକିସ୍ଥାନରେ ମିଶିବାର କିଛି ଯୁକ୍ତି ନାହିଁ । ବର୍ତ୍ତମାନ ଭାରତର ମୁସଲ୍‌ମାନ୍ ସଂଖ୍ୟା ପ୍ରାୟ କୋଡ଼ିଏ କୋଟି ବା ଜନ ସଂଖ୍ୟାର ଏକ ପଞ୍ଚମାଂଶ । ସେମାନେ ଭାରତର ଏକ ପଞ୍ଚମାଂଶ ଭୂଖଣ୍ଡ ଦାବୀ କରି ଏକ ସ୍ୱାଧୀନ ରାଜ୍ୟ ଗଠନ କରିବା ଯାହା କାଶ୍ମୀରକୁ ଧର୍ମ ଦୃଷ୍ଟିରୁ ପାକିସ୍ଥାନରେ ମିଶାଇବା ସେହିଭଳି ହେବ ।

୧୯୭୨ରେ ଭାରତ ଓ ପାକିସ୍ଥାନ ମଧ୍ୟରେ "ସିମଲା ରାଜିନାମା" ସ୍ୱାକ୍ଷରିତ ହୋଇଥିଲା । ସେହି ଅନୁସାରେ କାଶ୍ମୀର ପ୍ରଶ୍ନ ଭାରତ ଓ ପାକିସ୍ଥାନର ଏକ ଆଭ୍ୟନ୍ତରୀଣ ବ୍ୟାପାର । ଦୁଇଦେଶ ମଧ୍ୟରେ ଆପୋଷ ଆଲୋଚନା ମାଧ୍ୟମରେ କାଶ୍ମୀର ସମସ୍ୟା ସମାଧାନ କରିବା କଥା । କିନ୍ତୁ ପାକିସ୍ଥାନ ବର୍ତ୍ତମାନ ତାହାକୁ ମାନିବାକୁ ରାଜି ନୁହେଁ । ଥରକୁ ଥର ଜାତିସଂଘରେ ପାକିସ୍ଥାନ ସମସ୍ୟା ଉତ୍ଥାପନ କରିବା ବାସ୍ତବିକ୍ ନିନ୍ଦନୀୟ । ଏପରିକି ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ୍ ପରଘରେ ପଶି ମଙ୍ଗଳବାର କରିବା ଭଳି ଜାତିସଂଘ ହିଁ ଏହି ସମସ୍ୟାର ସମାଧାନ କରିବାକୁ ହକ୍‌ଦାର ବୋଲି ଘୋଷଣା କରିଛନ୍ତି । ଏହା ତାଙ୍କର ପାକିସ୍ଥାନକୁ ଅନ୍ଧ ଭାବରେ ସମର୍ଥନ କରିବା ଏକ ସାମ୍ରାଜ୍ୟବାଦୀ ମନୋଭାବର ପରିଚାୟକ । କାଶ୍ମୀର ପାକିସ୍ଥାନର ଏକ ଅଂଶ ବିଶେଷ ହୋଇଗଲେ ରାଷ୍ଟ୍ର ଗୋଷ୍ଠୀ ଦୃଷ୍ଟିରୁ ପାକିସ୍ଥାନ ଆମେରିକା ଗୋଷ୍ଠୀର ଓ ଆମେରିକାଠାରୁ ବହୁ ପରିମାଣରେ ଋଣୀ ହୋଇ ରହିବ । ଯୁକ୍ତରାଷ୍ଟ୍ର–ଆମେରିକା ସେଠାରେ ଏକ ସାମରିକ ଘାଟୀ ପ୍ରତିଷ୍ଠା କରି ସମସ୍ତ ଏସିଆ ଭୂଖଣ୍ଡକୁ ତାହାର ପଦାନତ କରି ରଖିବା ହେଲା କ୍ଲିଣ୍ଟନ୍‌ଙ୍କ ଭିତିରି ଉଦ୍ଦେଶ୍ୟ । ଇରାକ୍ ଉପରେ ଯୁକ୍ତରାଷ୍ଟ୍ର ଆମେରିକା ଆକ୍ରୋଶମୂଳକ ଭାବରେ ଆକ୍ରମଣ କରିବାକୁ ପୃଥିବୀର ଅଧିକାଂଶ ଦେଶ ନାପସନ୍ଦ କରିଛନ୍ତି । ତାହା ସହିତ ବ୍ରିଟେନ୍‌ର ଯୋଗଦାନ ରାଷ୍ଟ୍ର ଗୋଷ୍ଠୀ ଓ ସାମ୍ରାଜ୍ୟବାଦୀ ମନୋଭାବର ପରିଚାୟକ । ସେମାନଙ୍କ ଆକ୍ରମଣ ନିନ୍ଦନୀୟ । କାରଣ

ଜାତିସଂଘର ସେକ୍ରେଟାରୀ ଜେନେରାଲ୍ କୋଫି ଆନନ୍ ଏହାକୁ ମଧ୍ୟ ନିନ୍ଦା କରିଛନ୍ତି। କୋଫି ଆନନ୍‌ଙ୍କ ଭାଷଣରୁ ଏହି ଆକ୍ରମଣ ଜାତିସଂଘର ବିନା ଅନୁମୋଦନରେ ହୋଇଛି ; ଏହା ପରିଷ୍କାର ଜଣାପଡୁଛି ।

୧୯୪୯ ମସିହା ଜାନୁଆରୀ ପହିଲାଠାରୁ ଯୁଦ୍ଧ ବିରତି ସୀମାରେଖା ପ୍ରକୃତ ନିୟନ୍ତ୍ରଣରେଖା ରୂପେ ଚିହ୍ନଟ ହୋଇ ଆସିଛି। ସମ୍ବିଧାନ ସେହି ସମୟରେ ପ୍ରଣୀତ ହେଉଥିଲା। ତେଣୁ ସମ୍ବିଧାନର ୩୭୦ ଧାରାରେ କାଶ୍ମୀର ମିଶ୍ରଣ ଚୂଡ଼ାନ୍ତ ନୁହେଁ ବୋଲି ଦର୍ଶାଯାଇଛି। ରାଜା ହରିସିଂ ଭାରତ ସହିତ ମିଶି ଯିବାକୁ ଗ୍ରହିଥିଲେ। ତାଙ୍କ ଇଚ୍ଛାକୁ ଭାରତ ଉପେକ୍ଷା କରି ଗତ ୫୦ ବର୍ଷ ହେଲା ଅସୁବିଧାର ସମ୍ମୁଖୀନ ହୋଇଛି। ଦୁଇ ଦେଶ ମଧ୍ୟ ଭାଗରେ ସୃଷ୍ଟି ହୋଇଥିବା ଆଜାଦ୍ କାଶ୍ମୀର ବର୍ତ୍ତମାନ ଭାରତ/ ପାକିସ୍ଥାନର ସୀମାରେଖା ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ। କାଶ୍ମୀର ଭାରତର ଅଂଶ ବିଶେଷ ଭାବେ ରହିଥିଲେ ମଧ୍ୟ ଆଜାଦ୍ କାଶ୍ମୀର ଭାରତ କିମ୍ବା ପାକିସ୍ଥାନ କାହାର ନିୟନ୍ତ୍ରଣ ମଧ୍ୟରେ ନାହିଁ। ପାକିସ୍ଥାନକୁ ଏହା ଅଧିକ ସୁହାଉଛି।

ବହୁବର୍ଷ ଧରି ପାକିସ୍ଥାନ ଧର୍ମଭିତ୍ତିକ ପ୍ରସ୍ତୁର ଚଳେଇବା, ଗୋଇନ୍ଦାମାନଙ୍କୁ ଭାରତକୁ ପ୍ରେରଣ କରି ଗୋଳମାଳ ସୃଷ୍ଟି କରିବା କାର୍ଯ୍ୟ ଚଳେଇ ଆସିଛି। ନିକଟ ଅତୀତରେ ଅଯୋଧ୍ୟାରେ ରାମ ମନ୍ଦିର ସମସ୍ୟା ପଛରେ ପାକିସ୍ଥାନର ହାତ ଅଛି। ଭାରତର ବିଭିନ୍ନ ସ୍ଥାନରେ ହିନ୍ଦୁ ମୁସଲମାନ୍‌ଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବା, କାଶ୍ମୀରରେ ଉଗ୍ରପନ୍ଥୀ ସୃଷ୍ଟି କରିବା ଓ ସେମାନଙ୍କୁ ସାମରିକ ପ୍ରଶିକ୍ଷଣ ସହ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବାରେ ପାକିସ୍ଥାନ କୋଟି କୋଟି ଟଙ୍କା ବ୍ୟୟ କରି ଆସୁଛି। ଏହା ଯୁକ୍ତରାଷ୍ଟ୍ର ଆମେରିକାକୁ ଜଣାଇଲେ ମଧ୍ୟ ଜାଣିଶୁଣି ଆଖିବୁଜି ଦେଉଛି। କାରଣ ରାଷ୍ଟ୍ରଗୋଷ୍ଠୀ ଦୃଷ୍ଟିରୁ ଓ ଯୁଦ୍ଧ ସରଞ୍ଜାମ ବିକ୍ରୟ କରିବା ନିମିତ୍ତ ଯୁକ୍ତରାଷ୍ଟ୍ର ଆମେରିକା ପାଇଁ ପାକିସ୍ଥାନ ଏକ ପ୍ରଶସ୍ତ କ୍ଷେତ୍ର।

ଧର୍ମ ନିରପେକ୍ଷ ରାଷ୍ଟ୍ର ଭାବରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ହିନ୍ଦୁ–ମୁସଲମାନ୍‌ଙ୍କ ମଧ୍ୟରେ କିଛି ଅସୁବିଧା ପରିଲକ୍ଷିତ ହୁଏ ନାହିଁ। ସେମାନେ ବନ୍ଧୁ ଭାବରେ ବସବାସ କରନ୍ତି। ପ୍ରତ୍ୟେକ ପ୍ରତ୍ୟେକଙ୍କର ଭାଇ ଭାଇ ହୋଇ ଚଳନ୍ତି। କିନ୍ତୁ କେତେକ ମୁଷ୍ଟିମେୟ ମୁସଲମାନ୍ ନେତା ପାକିସ୍ଥାନ ଓ ବଙ୍ଗଳାଦେଶର ପ୍ରରୋଚନାରେ ଭାରତରେ ଶାନ୍ତିରକ୍ଷା କରାଇ ଦେବା ଚାହାଁନ୍ତି ନାହିଁ। ଏହି ନ୍ୟସ୍ତସ୍ୱାର୍ଥ ନେତାମାନଙ୍କୁ ପ୍ରତିହତ କରିବାକୁ ପଡ଼ିବ। ଆମର ସୁଦୃଢ଼ ବୈଦେଶିକ ନୀତି ମାଧ୍ୟମରେ ପୃଥିବୀର ବିଭିନ୍ନ ରାଷ୍ଟ୍ରକୁ କାଶ୍ମୀର ମିଶ୍ରଣ ଏକ ଆଭ୍ୟନ୍ତରୀଣ ସମସ୍ୟା ଭାବେ ଧାରଣା ଦେବାକୁ ହେବ। ଜାତିସଂଘରୁ କାଶ୍ମୀର ପ୍ରଶ୍ନ ଉଠେଇ ଆଣିବା ଦରକାର। ଆଜାଦ୍ କାଶ୍ମୀରକୁ ଭାରତରେ ମିଶାଇ "ସିମଲା ରାଜିନାମା" ଅନୁସାରେ ଆଲୋଚନା ମାଧ୍ୟମରେ ଏହି ସମସ୍ୟାର ସମାଧାନ କରିବାକୁ ପଡ଼ିବ।

---

କ୍ୟୁରେଟର୍,
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

## ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ୩୧୮ କୋଟି ୨୦ ଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କା ବ୍ୟୟ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ଚଳିତ ଆର୍ଥିକ ବର୍ଷରେ ଗତ ଡିସେମ୍ବର ମାସ ଶେଷ ସୁଦ୍ଧା ୩୧୮ କୋଟି ୨୦ ଲକ୍ଷ ୪୩ ହଜାର ଟଙ୍କା ବିନିଯୋଗ କରାଯାଇଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି ।

ସେଥିମଧ୍ୟରୁ ଜବାହର ରୋଜଗାର ଯୋଜନାରେ ୯୩ କୋଟି ୧୧ ଲକ୍ଷ ୦୬ ହଜାର ଟଙ୍କା ଏବଂ ନିଯୁକ୍ତି ପ୍ରତିଶ୍ରୁତି ଯୋଜନାରେ (ଇ.ଏ.ଏସ୍) ରେ ୧୦୮ କୋଟି ୬୦ ଲକ୍ଷ ୦୭ ହଜାର ଟଙ୍କା ବିନିଯୋଗ କରାଯାଇ ସମୁଦାୟ ୪ କୋଟି ୧୨ ଲକ୍ଷ ୮୮ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇଛି । ସେହିପରି ଇନ୍ଦିରା ଆବାସ ଯୋଜନାରେ ୫୩ କୋଟି ୪୩ ଲକ୍ଷ ୬୫ ହଜାର ଟଙ୍କା ବ୍ୟୟରେ ୨୩,୦୧୪ଟି ବାସୋପଯୋଗୀ ଗୃହ ନିର୍ମାଣ କରାଯାଇ ବାସହୀନ ଗରିବ ଆଦିବାସୀ ଓ ହରିଜନମାନଙ୍କୁ ଯୋଗାଇ ଦିଆଯାଇଛି ଏବଂ ନିୟୁତ କୂପ ଯୋଜନା ମାଧ୍ୟମରେ ୧୮ କୋଟି ୭୫ ଲକ୍ଷ ୪୯ ହଜାର ଟଙ୍କା ବିନିଯୋଗ କରାଯାଇ ୬୭୨୬ଟି ସେଚକୂପ ଖନନ କରାଯାଇଛି । ଉକ୍ତ ସମୟ ମଧ୍ୟରେ କଳାପଟା ଯୋଜନାରେ ୨୧୮ଟି ସ୍କୁଲଗୃହ ନିର୍ମାଣ କରାଯାଇ ଏ ବାବଦରେ ୩ କୋଟି ୪୬ ଲକ୍ଷ ୫୦ ହଜାର ଟଙ୍କା ବ୍ୟୟ କରାଯାଇଛି ଏବଂ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ (ଆଇ.ଆର୍.ଡି.ପି)ରେ ୩୫ କୋଟି ୨୦ ଲକ୍ଷ ୮୬ ହଜାର ଟଙ୍କା ବ୍ୟୟରେ ୪୫,୪୮୫ ଜଣ ପରିବାର ଉପକୃତ ହୋଇଛନ୍ତି । ଟ୍ରାଇସେମ୍ ଯୋଜନା ଅନ୍ତର୍ଗତ ବିଭିନ୍ନ କାର୍ଯ୍ୟକ୍ରମରେ ୫୯୮୦ ଜଣ ଯୁବକଙ୍କୁ ତାଲିମ ପ୍ରଦାନ କରାଯାଇ ଏ ବାବଦରେ ୨ କୋଟି ୩୭ ଲକ୍ଷ ୮୭ ହଜାର ଟଙ୍କା ବ୍ୟୟ କରାଯାଇଛି । ସେହିପରି ୫୨୬୨ ଜଣଙ୍କୁ ଟୁଲ୍‌କିଟ୍ ପ୍ରଦାନ କରାଯାଇ ଏ ବାବଦରେ ୯୧ ଲକ୍ଷ ୪୬ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି ଏବଂ ଡ୍ୱାକ୍ରା ଯୋଜନା ମାଧ୍ୟମରେ ୧୦୧୬ଟି ଗ୍ରାମ୍ୟ ମହିଳା ଗୋଷ୍ଠୀ କେନ୍ଦ୍ର ସ୍ଥାପନ କରାଯାଇ ଏଥିପାଇଁ ୨ କୋଟି ୩୩ ଲକ୍ଷ ୪୬ ହଜାର ଟଙ୍କା ବିନିଯୋଗ କରାଯାଇଛି ବୋଲି ବିଭାଗୀୟ ସୂତ୍ରରୁ ପ୍ରକାଶ ।

# ସୁନ୍ଦରଗଡ଼ ଜିଲ୍ଲାରେ ସାକ୍ଷରତା ଓ ସାକ୍ଷରୋତ୍ତର କାର୍ଯ୍ୟକ୍ରମ

ଶ୍ରୀ ଇନ୍ଦ୍ରମଣି ମହାଳିକ

୧୯୬୫ ମସିହା ସେପ୍ଟେମ୍ବର ୮ ତାରିଖ ତେହେରାନଠାରେ ପୃଥିବୀର ବିଭିନ୍ନ ଦେଶର ଶିକ୍ଷାବିତ୍‌ମାନଙ୍କର ଏକ ସମ୍ମିଳନୀ ହୋଇଥିଲା । ଆନ୍ତର୍ଜାତିକ ସ୍ତରରେ ପ୍ରଥମ ଥର ଲାଗି ସମଗ୍ର ବିଶ୍ୱର ନିରକ୍ଷରତାଜନିତ ସମସ୍ୟା ଏଠାରେ ଆଲୋଚନା ହୋଇଥିଲା । ସେହି ଦିନଠାରୁ ସାରା ବିଶ୍ୱରେ ନିରକ୍ଷରତା ଦୂର କରିବାଲାଗି ନାନା ପ୍ରକାର ପ୍ରଚେଷ୍ଟା ଚାଲି ଆସିଛି ।

ଆମ ଦେଶ ଭାରତ ଏକ ବିକାଶଶୀଳ ରାଷ୍ଟ୍ର ଓ ଜନସଂଖ୍ୟା ଦୃଷ୍ଟିରୁ ପୃଥିବୀର ଦ୍ୱିତୀୟ ବୃହତ୍ତମ ରାଷ୍ଟ୍ର । ଆମ ଦେଶର ସମସ୍ତ ନାଗରିକଙ୍କୁ ପ୍ରାଥମିକ ଶିକ୍ଷା ଦେବା ପାଇଁ ଉଦ୍ୟମ ଜାରି ରହିଛି । ୧୯୯୧ ଜନଗଣନା ଅନୁଯାୟୀ ଆମ ଦେଶର ଶତକଡ଼ା ୪୮ ଭାଗ ଲୋକ ନିରକ୍ଷର, ତନ୍ମଧ୍ୟରୁ ୬୫ ଭାଗ ମହିଳା ଅଟନ୍ତି । ଏହି ବିରାଟ ସମସ୍ୟା କେବଳ ସରକାରୀ ଉଦ୍ୟମରେ ସମାଧାନ ହେବା ସମ୍ଭବ ନୁହେଁ । ତେଣୁ ୧୯୮୮ ମସିହା ମେ ୫ ତାରିଖରୁ ଜାତୀୟ ସାକ୍ଷରତା ମିଶନ ଗଢ଼ାଯାଇ ସମସ୍ତଙ୍କ ସହଯୋଗରେ ଏକ ଗଣ ଅଭିଯାନ ଭାବରେ ସାକ୍ଷରତା କାର୍ଯ୍ୟକ୍ରମକୁ ଗ୍ରହଣ କରାଯାଇଛି ଏବଂ ସମାଜର ସବୁ ଶ୍ରେଣୀର ଲୋକଙ୍କ ସହଯୋଗରେ ଏହି କାର୍ଯ୍ୟକ୍ରମ ଭାରତରେ ଆଗେଇବାରେ ଲାଗିଛି ।

ଜାତୀୟ ସାକ୍ଷରତା ମିଶନର ସ୍ୱୀକୃତି କ୍ରମେ ଓଡ଼ିଶାର ପ୍ରଥମ ଜିଲ୍ଲା ଭାବେ ସୁନ୍ଦରଗଡ଼ ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ କାର୍ଯ୍ୟକ୍ରମ ହାତକୁ ନିଆଗଲା । ଆଦିବାସୀ ଅଧ୍ୟୁଷିତ ବଣପାହାଡ଼ ଘେରା ସୁନ୍ଦରଗଡ଼ ଜିଲ୍ଲାର ସମସ୍ତ ଅଧିବାସୀଙ୍କୁ ସାକ୍ଷର କରିବାର ମହାନ ଲକ୍ଷ୍ୟ ନେଇ ଜିଲ୍ଲାରେ ୧୯୯୦ ମସିହାରୁ ସାକ୍ଷରତା କାର୍ଯ୍ୟକ୍ରମ ଆରମ୍ଭ କରାଗଲା । ଏହି ଅଭିଯାନର ମୂଳମନ୍ତ୍ର ଥିଲା "ସବୁଜ ସାକ୍ଷର ସୁନ୍ଦରଗଡ଼" । ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ସମ୍ମତି, ଅନୁଦାନ ଏବଂ ସହଯୋଗରେ ଜିଲ୍ଲାର ପ୍ରତ୍ୟେକ ଗ୍ରାମାଞ୍ଚଳଠାରୁ ନେଇ ପୌରାଞ୍ଚଳ ପର୍ଯ୍ୟନ୍ତ ସର୍ବତ୍ର ଏହି କାର୍ଯ୍ୟକ୍ରମ ଦ୍ରୁତ ଗତିରେ ଆଗେଇ ଚାଲିଲା । ପ୍ରଥମ ପର୍ଯ୍ୟାୟରେ ଜିଲ୍ଲାରେ ଥିବା ନିରକ୍ଷରମାନଙ୍କୁ ଚିହ୍ନଟ କରିବା ନିମନ୍ତେ ପଦକ୍ଷେପ ଗ୍ରହଣ କରାଗଲା । ସାକ୍ଷରତା କାର୍ଯ୍ୟକ୍ରମରେ କେବଳ ୯ ବର୍ଷଠାରୁ ୪୫ ବର୍ଷ ବୟସ ସୀମା ମଧ୍ୟରେ ଥିବା ନିରକ୍ଷରମାନଙ୍କୁ ସାକ୍ଷର କରିବା ପାଇଁ ରାଷ୍ଟ୍ରୀୟ ସାକ୍ଷରତା ମିଶନର ନିର୍ଦ୍ଦେଶନାମା ଥିବା ଯୋଗୁଁ କେବଳ ସେହି ବୟସ ସୀମା ମଧ୍ୟରେ ଥିବା ଲୋକଙ୍କୁ ଚିହ୍ନଟ କରାଯାଇଥିଲା । ଏହାର ଫଳାଫଳ ସ୍ୱରୂପ ଜିଲ୍ଲାରେ ମୋଟ ୩,୨୫,୬୩୫ ଜଣ ନିରକ୍ଷର (୧,୩୦,୭୧୬ ଜଣ ପୁରୁଷ ଏବଂ ୧,୯୪,୯୧୯ ଜଣ ମହିଳା) ଥିବାର ଜଣାଗଲା । ନିରକ୍ଷର ବ୍ୟକ୍ତିଙ୍କୁ ଚିହ୍ନଟ କରିବାର ଏହି ଗୁରୁ ଦାୟିତ୍ୱକୁ ବହନ କରିଥିଲେ ଜିଲ୍ଲାରେ ଥିବା ସମସ୍ତ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ଶିକ୍ଷକମାନେ ।

ଜନସାଧାରଣଙ୍କ ମନରେ ପାଠର ମହତ୍ୱ ଏବଂ ଉପାଦେୟତା ସମ୍ବନ୍ଧରେ ଜାଗରଣ ସୃଷ୍ଟି କରିବା ନିମନ୍ତେ ବିଭିନ୍ନ ମାଧ୍ୟମ ସାହାଯ୍ୟରେ ପ୍ରଚେଷ୍ଟା କରାଗଲା । ଶିକ୍ଷାର ପରିବେଶ ସୃଷ୍ଟି ନିମନ୍ତେ ପ୍ରତ୍ୟେକ ଗାଁରେ ସଭା ସମିତିମାନ କରାଗଲା । ପ୍ରାଚୀର ପତ୍ର, ବିଜ୍ଞାପନ, ପାଲା, ଦାସକାଠିଆ, ଲୋକନୃତ୍ୟ ଆଦି ସହ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା । ଭାରତ ଜ୍ଞାନ ବିଜ୍ଞାନ ସମିତି ଦ୍ୱାରା ପଥପ୍ରାନ୍ତ ନାଟକ ଏବଂ ଲୋକଙ୍କ ମନରୁ କୁସଂସ୍କାର ଏବଂ ଅନ୍ଧ ବିଶ୍ୱାସ ଏଡ଼ାଇବା ପାଇଁ ଯାଥା ଆଦି କାର୍ଯ୍ୟକ୍ରମ ପରିବେଷଣ ମଧ୍ୟ ସାକ୍ଷରତା କାର୍ଯ୍ୟକ୍ରମ ପାଇଁ ପରିବେଶ ସୃଷ୍ଟି କରିବାରେ ବେଶ୍ ସହାୟକ ହୋଇ ପାରିଥିଲା । ଏତଦ୍ ବ୍ୟତୀତ ପଦଯାତ୍ରା, ସାଇକେଲ ର୍‌ୟାଲି, ମାନବ ଶୃଙ୍ଖଳ ର୍‌ୟାଲି, ସାକ୍ଷରତା ସମ୍ବନ୍ଧୀୟ କ୍ରୀଡ଼ାତର୍କ ପ୍ରତିଯୋଗିତା ଇତ୍ୟାଦି ଏଥି ନିମିତ୍ତ କରାଯାଇଥିଲା ।

ନିରକ୍ଷର ବ୍ୟକ୍ତିଙ୍କୁ ଶିକ୍ଷାଦାନ ନିମନ୍ତେ କାର୍ଯ୍ୟ ସୁପରିଚାଳନା ଏବଂ ତଦାରଖ ଇତ୍ୟାଦି କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ବିଭିନ୍ନ ପ୍ରଶିକ୍ଷଣ ଦିଆଯାଇଥିଲା । ମାଷ୍ଟର ଟ୍ରେନ୍‌ର ମୁଖ୍ୟ ସାଧନ କର୍ମୀ, ସଂଯୋଜକ ଏବଂ ସାକ୍ଷରତା କର୍ମୀଙ୍କ ପ୍ରଶିକ୍ଷଣ ପରେ ଶିକ୍ଷାଦାନ କେନ୍ଦ୍ରମାନ ଖୋଲା ଯାଇଥିଲା । ପ୍ରତ୍ୟେକ କେନ୍ଦ୍ରରେ ଅନ୍ତର୍ଭୁକ୍ତ କରାଯାଇଥିବା ସମସ୍ତ ନିରକ୍ଷରଙ୍କ ନିମନ୍ତେ ପଠନ ଓ ଲିଖନ ସାମଗ୍ରୀମାନ ଯୋଗାଇ ଦିଆଯାଇ ଥିଲା । ୧୯୯୧ ମସିହା ଅପ୍ରେଲ ପହିଲାକୁ "ଅକ୍ଷର ଦାନ ଦିବସ" ରୂପେ ପାଳିତ କରି ସେହି ଦିନଠାରୁ ସାକ୍ଷରତା କାର୍ଯ୍ୟକ୍ରମରେ ଶିକ୍ଷାଦାନ ଆରମ୍ଭ ହୋଇଥିଲା । ସରକାରୀ କର୍ମଚାରୀଙ୍କ ସମେତ ମୋଟ ୩୧,୬୭୭ ଜଣ ସାକ୍ଷରତା କର୍ମୀ, ୩,୦୮୫ ଜଣ ସାଧନ କର୍ମୀ ଏବଂ ୬୭୭ ଜଣ ମୁଖ୍ୟ ସାଧନ କର୍ମୀ ଏହି ମହାନ କାର୍ଯ୍ୟରେ ସହଯୋଗ କରିଥିଲେ । ଏତଦ୍‌ବ୍ୟତୀତ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଯୁବକ ସଂଘ, ମହିଳା ସମିତି ଇତ୍ୟାଦିଙ୍କ ଭୂମିକା ସାକ୍ଷରତା କାର୍ଯ୍ୟକ୍ରମରେ କିଛି କମ୍ ନଥିଲା । ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ

(TLC) ସମ୍ପନ୍ନ ହୋଇଥିଲା । ୧୯୯୨ ମସିହା ଜୁନ୍ ମାସରେ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ କରାଯାଇଥିବା ୩,୨୫,୬୩୫ ଜଣ ନିରକ୍ଷରଙ୍କ ମଧ୍ୟରୁ ୧,୬୧,୩୯୩ ଜଣ ସାକ୍ଷରତା କାର୍ଯ୍ୟକ୍ରମରେ ବ୍ୟବହୃତ "ଆମକଥା" ପୁସ୍ତକର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ ସମ୍ପୂର୍ଣ୍ଣ କରି ସାକ୍ଷର ହୋଇଥିଲେ, ଯାହାର ପରିମାଣ ଶତକଡ଼ା ୪୬.୫ ଏବଂ ଏମାନଙ୍କୁ ନବସାକ୍ଷର ବୋଲି କୁହାଗଲା । ଏତଦ୍‌ବ୍ୟତୀତ ୬୮,୩୮୮ ଜଣ "ଆମକଥା" ଦ୍ୱିତୀୟ ଭାଗ ଏବଂ ୬୦,୦୨୯ ଜଣ ପ୍ରଥମ ଭାଗ ସମ୍ପୂର୍ଣ୍ଣ କରି ଅର୍ଦ୍ଧ ସାକ୍ଷର ଭାବରେ ପରିଚିତ ହୋଇଥିଲେ ।

ନବ ସାକ୍ଷରଙ୍କର ଶିକ୍ଷାର ମାନ ବଢ଼ାଇବା, ସେମାନଙ୍କୁ ବିଭିନ୍ନ ପ୍ରକାର ଉନ୍ନତିମୂଳକ କାର୍ଯ୍ୟର ଶିକ୍ଷାଦାନ ଦେବା ଏବଂ ମୁଖ୍ୟତଃ ତାଙ୍କୁ ନିରନ୍ତର ଶିକ୍ଷା ଯୋଗାଇବା ସଙ୍ଗେ ସଙ୍ଗେ ଅର୍ଦ୍ଧ ସାକ୍ଷରଙ୍କୁ ସାକ୍ଷର କରିବା ନିମନ୍ତେ ସାକ୍ଷରତା ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମ (Post Literacy Campaign) ଜିଲ୍ଲାରେ ଆରମ୍ଭ କରିବା ନିମନ୍ତେ ରାଷ୍ଟ୍ରୀୟ ସାକ୍ଷରତା ମିଶନ ଅନୁମତି ଦେଇଥିଲେ । ୧୯୯୩ ମସିହା ମାର୍ଚ୍ଚ ୨୫ ତାରିଖ ଦିନ ଜିଲ୍ଲାରେ ସାକ୍ଷରତା ପରବର୍ତ୍ତୀ ବା ଉତ୍ତର ସାକ୍ଷରତା କାର୍ଯ୍ୟକ୍ରମ ଉଦ୍‌ଘାଟିତ ହୋଇଥିଲା । ଏହାର ମୂଳ ଲକ୍ଷ୍ୟ ଯେ କେବଳ ନବ ସାକ୍ଷରଙ୍କୁ ନିରନ୍ତର ଶିକ୍ଷାଦାନ ଦେବା ସେତିକି ନୁହେଁ ବରଂ ସେମାନଙ୍କୁ ସରକାରଙ୍କ ବିଭିନ୍ନ ଆୟକାରୀ ଯୋଜନା ସମ୍ପର୍କରେ ସୂଚନା ଦେବା, ପରିବେଶ ସୁରକ୍ଷା, ବନ ସୁରକ୍ଷା ବିଷୟରେ ସଚେତନ କରିବା, ବିଭିନ୍ନ ଆୟକାରୀ ଧନ୍ଦାମୂଳକ ଯୋଜନାରେ ସଂଶ୍ଳିଷ୍ଟ କରିବା ଇତ୍ୟାଦି ।

ଏହି କାର୍ଯ୍ୟକ୍ରମ ନିମନ୍ତେ ସମଗ୍ର ଜିଲ୍ଲାର ବିଭିନ୍ନ ସ୍ଥାନରେ ୪୬୨ ଗୋଟି ପାଠାଗାର ଖୋଲାଯାଇଥିଲା । ପ୍ରତିଟି ପାଠାଗାରରେ ଆବଶ୍ୟକୀୟ ଉପକରଣଗୁଡ଼ିକ ସହିତ ନବସାକ୍ଷରଙ୍କ ନିମନ୍ତେ ସାକ୍ଷରତା ପରବର୍ତ୍ତୀ ପାଠ୍ୟ ପୁସ୍ତକ "ଆମ ସଂସାର", ବିଭିନ୍ନ ପ୍ରକାର ଶିକ୍ଷଣୀୟ ପାଠ୍ୟ ପୁସ୍ତକ, ଗଳ୍ପ ବହି, ମନୋରଞ୍ଜନ ପତ୍ରିକା ଆଦି ଯୋଗାଇ ଦିଆଯାଇଛି । ଦୈନିକ ଖବର କାଗଜ ତଥା ଜିଲ୍ଲା ସାକ୍ଷରତା ସମିତି ଦ୍ୱାରା ପ୍ରକାଶିତ ମାସିକ ପତ୍ରିକା "ବିକାଶ" ନବ ସାକ୍ଷରମାନଙ୍କ ପଠନ ରୁଚିରେ ବେଶ୍ ପ୍ରଭାବ ପକାଇଥିଲା । ଏହି କେନ୍ଦ୍ରଗୁଡ଼ିକୁ ଜନ ବିକାଶ କେନ୍ଦ୍ର ନାମରେ ନାମିତ କରାଗଲା । ପ୍ରତିଟି କେନ୍ଦ୍ର ପରିଚାଳନା ନିମନ୍ତେ ଦୁଇଜଣ ଲେଖାଏଁ (ଜଣେ ପୁରୁଷ ଏବଂ ଜଣେ ମହିଳା) ସ୍ୱେଚ୍ଛାସେବୀ କାର୍ଯ୍ୟରତ ଥିଲେ । ତିନି/ଚାରି ଗୋଟି ଜନ ବିକାଶ କେନ୍ଦ୍ରକୁ ନେଇ ଗୋଟିଏ ଲେଖାଏଁ ସାକ୍ଷରତା ନିୟନ୍ତ୍ରଣ କକ୍ଷ ଖୋଲାଯାଇଥିଲା । ଏହି ନିୟନ୍ତ୍ରଣ କକ୍ଷରେ ଜଣେ ଲେଖାଏଁ ସଂଯୋଜକ କାର୍ଯ୍ୟ ତୁଲାଉଥିଲେ । ମୁଖ୍ୟତଃ ଜନ ବିକାଶ କେନ୍ଦ୍ରଗୁଡ଼ିକରେ ଥିବା ସ୍ୱେଚ୍ଛାସେବୀମାନଙ୍କର କାର୍ଯ୍ୟ ନିରୀକ୍ଷଣ କରିବା ଦାୟିତ୍ୱରେ ସେ ନିଯୋଜିତ ଥିଲେ । ପ୍ରତିଟି ବ୍ଲକ ଅଧୀନରେ ଥିବା ଜନ ବିକାଶ କେନ୍ଦ୍ର ଏବଂ ସାକ୍ଷରତା ନିୟନ୍ତ୍ରଣ କକ୍ଷଗୁଡ଼ିକରେ କାର୍ଯ୍ୟ କରୁଥିବା ସ୍ୱେଚ୍ଛାସେବୀଙ୍କ କାର୍ଯ୍ୟ ତଦାରଖ ତଥା ଜିଲ୍ଲା ସାକ୍ଷରତା ସମିତି ସହ ସମନ୍ୱୟ ରକ୍ଷା କରି ବିଭିନ୍ନ ରିପୋର୍ଟ ପଠାଇବା ତଥା ଅନ୍ୟାନ୍ୟ କାର୍ଯ୍ୟଗୁଡ଼ିକ ତୁଲାଇବା ନିମନ୍ତେ ପ୍ରତି ବ୍ଲକ୍‌ରେ ଜଣେ ଲେଖାଏଁ ପୂର୍ଣ୍ଣ ସମୟ ସ୍ୱେଚ୍ଛାସେବୀ କାର୍ଯ୍ୟ କରୁଥିଲେ । ସମସ୍ତ ସ୍ୱେଚ୍ଛାସେବୀ, ସରକାରୀ କର୍ମଚାରୀ, ବିଭିନ୍ନ ଅଣ ଆନୁଷ୍ଠାନିକ କେନ୍ଦ୍ର, ଯୁବକ ସଂଘ, ମହିଳା ସମିତି ଇତ୍ୟାଦିଙ୍କ ପୂର୍ଣ୍ଣ ସହଯୋଗ କ୍ରମେ ଏହି କାର୍ଯ୍ୟକ୍ରମ ସଫଳତାର ସହ ଆଗେଇବାରେ ଲାଗିଲା । ସୁନ୍ଦରଗଡ଼ ଜିଲ୍ଲାରେ ବର୍ତ୍ତମାନ ନବସାକ୍ଷର ତଥା ସାକ୍ଷରତା କାର୍ଯ୍ୟକ୍ରମରେ ଉପସ୍ଥିତ ହୋଇଥିବା ପୁରୁଷ ଓ ମହିଳାମାନଙ୍କୁ ବିଭିନ୍ନ ଜନ ହିତକର ତଥା ଦାରିଦ୍ର୍ୟ ଦୂରୀକରଣ ଯୋଜନା ସମ୍ବନ୍ଧରେ ସଚେତନ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି । ଗ୍ରାମାଞ୍ଚଳରେ ସରକାରଙ୍କ ତରଫରୁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମରେ ସେମାନେ ଯେପରି ନିଜକୁ ନିୟୋଜିତ କରି କାର୍ଯ୍ୟକ୍ରମକୁ ସଫଳ କରାଇ ପାରିବେ ସେ ସମ୍ବନ୍ଧରେ ମଧ୍ୟ ତାଙ୍କୁ ବିଭିନ୍ନ ପର୍ଯ୍ୟାୟରେ ଏକତ୍ରିତ କରି ତାଲିମ ପ୍ରଦାନ କରାଯାଉଛି ।

ଆଦିବାସୀ ଅଧ୍ୟୁଷିତ ଏହି ସୁନ୍ଦରଗଡ଼ ଜିଲ୍ଲା ଓଡ଼ିଶାର ପ୍ରଥମ ଜିଲ୍ଲା ଭାବେ ସାକ୍ଷରତା କାର୍ଯ୍ୟକ୍ରମକୁ ହାତକୁ ନେଇ ଏକ ଆଦର୍ଶ ସୃଷ୍ଟି କରିଛି । ଜିଲ୍ଲାର ସମସ୍ତ ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମଚାରୀ, ଯୁବକ ସଂଘ, ମହିଳା ସମିତି ସର୍ବୋପରି ଜନସାଧାରଣଙ୍କ ପ୍ରଚେଷ୍ଟାରେ ଏହି କାର୍ଯ୍ୟକ୍ରମ ସଫଳ ହୋଇପାରିଛି ।

**ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,**
**ସୁନ୍ଦରଗଡ଼**

# ସର୍ବୋଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି–ଡଃ ଆନନ୍ଦ

**ଶ୍ରୀ ସୁବାସ ମହତାବ**

ଭାରତ ସମ୍ବିଧାନର ତ୍ରିବେଣୀ ରୂପେ ପ୍ରବାହିତ–ଆଇନ ପ୍ରଣୟନ ସଂସ୍ଥା, ଶାସନ ସଂସ୍ଥା ଓ ନ୍ୟାୟ ପ୍ରଦାନକାରୀ ସଂସ୍ଥା । ଏହି ସଂସ୍ଥାତ୍ରୟ ପରସ୍ପରଠାରୁ ପୃଥକ ଓ ପରସ୍ପର ସ୍ୱାଧୀନ ଭାବେ କାର୍ଯ୍ୟରତ । ଏହି ସଂସ୍ଥାମାନଙ୍କ ମଧ୍ୟରେ ବିଚାର ସଂସ୍ଥା ସର୍ବୋପରି ମହତ୍ୱପୂର୍ଣ୍ଣ । ସମସ୍ତ ପ୍ରଚଳିତ ଆଇନ ସଠିକଭାବେ ବିଶ୍ଳେଷଣ କରି ଅର୍ଥ ଦେବା ଏବଂ ତଦନୁସାରେ ସମ୍ବିଧାନ ଅନୁମୋଦିତ ନ୍ୟାୟ ପ୍ରଦାନ କରିବା ଓ ସର୍ବୋପରି କଲ୍ୟାଣକାରୀ ସାର୍ବଜନୀନ ମାନବୀୟ ସଂକଳ୍ପକୁ ରୂପ ଦେବା ଏହାର ମହତ୍ୱପୂର୍ଣ୍ଣ ଦିଗର ପରିଚୟ ଦେଇଥାଏ । ଭାରତବର୍ଷରେ ସୁପ୍ରିମକୋର୍ଟ ବିଚାର ବିଭାଗର ଶ୍ରେଷ୍ଠ ନ୍ୟାୟାଳୟ ଓ ଏହାର ମୁଖ୍ୟବିଚାରପତି ହୋଉଛନ୍ତି ବିଚାର ବିଭାଗର ସର୍ବୋଚ୍ଚ କର୍ଣ୍ଣଧାର ।

ଭାରତର ସ୍ୱାଧୀନତା ପ୍ରାପ୍ତିରୁ ଆଜିଯାଏଁ ୨୮ ଜଣ ବ୍ୟକ୍ତି ମୁଖ୍ୟ ବିଚାରପତି ଆସନ ଅଳଂକୃତ କରିଛନ୍ତି । ଏହି ପବିତ୍ର ଆସନରେ ଡଃ ଆଦର୍ଶ ସେନ ଆନନ୍ଦ ୨୯ ତମ ମୁଖ୍ୟ ବିଚାରପତି ରୂପେ ଅଧିଷ୍ଠିତ ହୋଇଛନ୍ତି ।

ଡଃ ଆଦର୍ଶ ସେନ ଆନନ୍ଦ ଜାମ୍ମୁ–କାଶ୍ମୀର ରାଜ୍ୟରେ ୧୯୩୬ ମସିହା ନଭେମ୍ବର ୧ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ବୀରସେନ ଆନନ୍ଦ ବ୍ୟବସାୟୀ ଥିଲେ । ୧୯୫୮ ମସିହାରେ ସେ ଜାମ୍ମୁକାଶ୍ମୀର ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ୍ କରିଥିଲେ । ଛାତ୍ରାବସ୍ଥାରେ ସେ ଜାମ୍ମୁକାଶ୍ମୀର ବିଶ୍ୱବିଦ୍ୟାଳୟର ଛାତ୍ର ପରିଷଦର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ତା'ପରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରେ ଆଇନରେ ଅଧ୍ୟୟନ କରିଥିଲେ । ସେଠାରୁ ସେ ଲଣ୍ଡନ ଯାଇ ରାଜ୍ୟ ଗୋଷ୍ଠୀର ରାଜ୍ୟମାନଙ୍କ ସମ୍ବିଧାନ ବ୍ୟବସ୍ଥା ଉପରେ ଗବେଷଣା କରି ୧୯୬୩ରେ ଡକ୍ଟରେଟ ଉପାଧି ପାଇଥିଲେ । ୧୯୬୪ରେ ଲଣ୍ଡନରୁ ବାରିଷ୍ଟରୀ ପାସକରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପରେ ଚଣ୍ଡିଗଡ଼ଠାରେ ରହି ପଞ୍ଜାବ ଓ ହରିୟାନା ହାଇକୋର୍ଟର ତତ୍‌କାଳୀନ ସ୍ୱନାମଧନ୍ୟ ଆଡ୍‌ଭୋକେଟ କୁଳଦୀପ ସିଂହଙ୍କ ଅଧୀନରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ସ୍ୱଳ୍ପକାଳ ମଧ୍ୟରେ ନିଜର କର୍ତ୍ତବ୍ୟ ପରାୟଣତା, ବ୍ୟବସାୟିକ ପାରଦର୍ଶିତା ଓ ଉଜ୍ଜ୍ୱଳ ଚାରିତ୍ରିକ ବଳ ପାଇଁ ସେ କୁଳଦୀପ ସିଂହଙ୍କର ଅତି ପ୍ରିୟତମ ହୋଇ ପାରିଥିଲେ । ପରବର୍ତ୍ତୀ କାଳରେ କୁଳଦୀପ ସିଂହ ସୁପ୍ରିମକୋର୍ଟର ନ୍ୟାୟାଧୀଶ ହୋଇଥିଲେ । ଡଃ ଆନନ୍ଦ ତାଙ୍କର ସୁଯୋଗ୍ୟ ଶିଷ୍ୟ ହିସାବରେ ପ୍ରଥମେ ୩୮ ବର୍ଷ ବୟସରେ ଜାମ୍ମୁକାଶ୍ମୀର ହାଇକୋର୍ଟର ବିଚାରପତି ଭାବେ ୧୯୭୫ ମସିହାରେ ନିଯୁକ୍ତି ପାଇଥିଲେ ଏବଂ ୧୯୭୬ ମସିହାରେ ଉକ୍ତ ହାଇକୋର୍ଟର ସ୍ଥାୟୀ ବିଚାରପତି ହେଲେ । ୧୯୮୫ ମସିହାରେ ଜାମ୍ମୁ–କାଶ୍ମୀର ହାଇକୋର୍ଟର ପ୍ରଧାନ ବିଚାରପତି ଆସନ ଅଳଂକୃତ କରିଥିଲେ । ସେଠାରୁ ୧୯୮୯ ମସିହାରେ ମାନ୍ଦ୍ରାଜ ହାଇକୋର୍ଟର ମୁଖ୍ୟ ବିଚାରପତି ରୂପେ ନିଯୁକ୍ତି ପାଇଥିଲେ । ତା'ର ଦୁଇବର୍ଷ ପରେ ୧୯୯୧ ମସିହାରେ ସେ ସୁପ୍ରିମ କୋର୍ଟର ବିଚାରପତି ରୂପେ ନିଯୁକ୍ତି ପାଇ ବହୁ ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାଗୁଡ଼ିକର ସମାଧାନ କରି ବିଚାର ବିଭାଗ ପାଇଁ ନୂତନ ଦିଗ୍‌ଦର୍ଶନ ସୃଷ୍ଟି କରି ପାରିଥିଲେ ।

୧୯୯୮ ମସିହା ସେପ୍‌ଟେମ୍ବର ମାସ ୧୩ ତାରିଖରେ ପ୍ରଧାନ ବିଚାରପତି ଜଷ୍ଟିସ ପୁଞ୍ଛିଙ୍କ ଅବସର ପରେ ଭାରତର ରାଷ୍ଟ୍ରପତିଙ୍କ ଦ୍ୱାରା ଅକ୍ଟୋବର ମାସ ୧୦ ତାରିଖରୁ ସେ ମୁଖ୍ୟ ବିଚାରପତି ଦାୟିତ୍ୱ ଗ୍ରହଣ କରିଛନ୍ତି । ୨୦୦୧ ମସିହା ସେପ୍‌ଟେମ୍ବରମାସ ୧ ତାରିଖ ପର୍ଯ୍ୟନ୍ତ ସେ ଏହି ଆସନରେ ରହି ଅବସର ଗ୍ରହଣ କରିବେ ।

ସେ ନିଜର ବାଗବତ୍ତା, ନିଷ୍ପକ୍ଷ ବିଚାରଧାରା, ସୃଜନଶକ୍ତି ସମ୍ପନ୍ନ ପ୍ରଗତିଶୀଳ ଦକ୍ଷତା ଓ କଠୋର ବିଚାର ଧାରା ପାଇଁ ସୁପରିଚିତ । ନିଜର ସାଂଗଠନିକ ଦକ୍ଷତା ପାଇଁ ସେ ୧୯୯୬ ମସିହାଠାରୁ **International Institute of Human Rights Society**ର ସଭାପତି ରୂପେ କାର୍ଯ୍ୟ କରୁଛନ୍ତି । ସେ ବର୍ତ୍ତମାନ ଭାରତର ଜାତୀୟ ଆଇନ ସେବା ସଂସ୍ଥାର କାର୍ଯ୍ୟକାରୀ ସଭାପତି ଅଛନ୍ତି । ପ୍ରଥମ ଭାରତୀୟ ହିସାବରେ ଲଣ୍ଡନସ୍ଥ ଇନର ଟେମ୍ପଲ **(Enner Temole)**କୁ ସମ୍ମାନଜନକ ସଭ୍ୟ ରୂପେ ମନୋନୀତ ହୋଇଛନ୍ତି ଓ ୧୯୯୭ଠାରୁ ଲଣ୍ଡନ ବିଶ୍ୱବିଦ୍ୟାଳୟର ଫେଲୋସିପ ପାଇଛନ୍ତି ।

ସେ ଜାମ୍ମୁକାଶ୍ମୀର ରାଜ୍ୟର ସମ୍ବିଧାନ ଉପରେ ଏକ ସମାଲୋଚନାମୂଳକ ପୁସ୍ତକ ପ୍ରଣୟନ କରିଛନ୍ତି । ୧୯୯୧ରୁ ୧୯୯୮ ମଧ୍ୟରେ ସୁପ୍ରିମକୋର୍ଟର ନ୍ୟାୟାଧୀଶ ରୂପେ ତାଙ୍କର ପ୍ରଦତ୍ତ ବହୁ ଯୁଗାନ୍ତକାରୀ ବିଚାରଧାରା ଓ ନିଷ୍ପତ୍ତି ପାଇଁ ସେ ପ୍ରଖ୍ୟାତ ହୋଇ ପାରିଛନ୍ତି । ତନ୍ମଧ୍ୟରୁ କେତେକ ବିଚାର ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା ।

୧୯୯୬ ମସିହାରେ ଜଷ୍ଟିସ ଆନନ୍ଦ ଡ଼ି. କେ. ବସୁ ମାମଲାର ଏକ ରାୟରେ ପୋଲିସ ନିର୍ଯ୍ୟାତନାର ସମୀକ୍ଷା କରି କୌଣସି ଆସାମୀକୁ ପୋଲିସ ଗିରଫ କରିବା ପୂର୍ବରୁ କି କି ସର୍ତ୍ତମାନ

ପାଳନ କରିବ, ତାହା ନୂତନ ଭାବେ ନିର୍ଦ୍ଧାରଣ କରିଛନ୍ତି । ଏହି ନିୟମଗୁଡ଼ିକ ଟେଲିଭିଜନ ଓ ଅନ୍ୟାନ୍ୟ ଗଣମାଧ୍ୟମରେ ଅତୀତରେ ପ୍ରଚାର କରାଯାଇ ଜନ ସଚେତନତା ସୃଷ୍ଟି କରାଯାଇଛି ।

ସେହିପରି ଭଜନ ସିଂ ବନାମ ପଞ୍ଜାବ ରାଜ୍ୟ ମାମଲାରେ ୭ ଜଣ ଆସାମୀଙ୍କ ବିରୁଦ୍ଧରେ ପୋଲିସର ମାଡ଼ାଧିକ ପାଇଁ ନ୍ୟାୟମୂର୍ତ୍ତି ଆନନ୍ଦଙ୍କର ବିଚାରକ ମନ ବଦଳି ଉଠିଥିଲା । ଯାହା ଫଳରେ ସେ ଉକ୍ତ କେସ୍‌ରେ କ୍ଷତିପୂରଣ ଦେବାକୁ ଆଦେଶ ଦେଇ ଓ କ୍ଷତିପୂରଣ ଟଙ୍କା ଦିଗଭ୍ରଷ୍ଟ ପୋଲିସ ଅଫିସରଙ୍କର ବ୍ୟକ୍ତିଗତ ଆୟରୁ ଭରଣା କରିବା ପାଇଁ ଆଦେଶ ଦେଇଥିଲେ ।

ଅନ୍ୟ ଏକ ଯୁଗାନ୍ତକାରୀ ଏମ୍. ସି. ମେହେଟା ବନାମ ଭାରତ ସରକାର ମାମଲାରେ ପରିବେଶ ବିଜ୍ଞାନକୁ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟକ୍ରମ ଭାବେ ଗ୍ରହଣ କରି ଜନ ସଚେତନା ସୃଷ୍ଟି କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ପ୍ରଚଳିତ ଭାରତୀୟ ସମାଜରେ ଏକ ବ୍ୟାଧି ରୂପେ ଦେଖା ଦେଇଥିବା ଯୌତୁକଜନିତ ମୃତ୍ୟୁ ପାଇଁ ସେ କେ. ବାଲସୁବ୍ରମନିୟମ ବନାମ ଆନ୍ଧ୍ର ରାଜ୍ୟ ମାମଲାରେ ଏପରି ଅପରାଧୀମାନଙ୍କ ପ୍ରତି କଠୋର ଦଣ୍ଡ ବ୍ୟବସ୍ଥା ସହ ଏହି ମାମଲାଗୁଡ଼ିକରେ କୋହଳ ମନୋଭାବ ପ୍ରଦର୍ଶନ ନ କରିବାକୁ ନିମ୍ନ ଅଦାଲତମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ସେହିପରି ପଞ୍ଜାବ ସରକାର ବନାମ ଗୁରୁମିତ୍ ସିଂହ କେସ୍‌ଟିରେ ଯୌନ ବ୍ୟଭିଚାର ଉପରେ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ରାୟ ଥିଲା । ନାରୀ ମର୍ଯ୍ୟାଦାକୁ ରକ୍ଷା କରିବାକୁ ଯାଇ ଏପରି ମାମଲାଗୁଡ଼ିକ ନିଭୃତ କାମେରାରେ ଓ ସମ୍ଭବ ହେଲେ ନାରୀ ବିଚାରପତିମାନଙ୍କ ଦ୍ୱାରା ଶୁଣାଣି ହେବାକୁ ନିର୍ଦ୍ଦେଶ ଦେବା ସାଥେ ସାଥେ ଏହି ମାମଲାରେ ଏତଲା ଜନିତ ବିଳମ୍ବକୁ ସହାନୁଭୂତି ସହକାରେ ବିଚାର କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

କେନ୍ଦ୍ର ବାର କାଉନସିଲ ସଭାପତି ଭି.ସି. ମିଶ୍ରଙ୍କ କେସ୍‌ରେ ତାଙ୍କର ରାୟ ଥିଲା–ଆଡ୍‌ଭୋକେଟମାନଙ୍କ ଲାଇସେନ୍‌ସକୁ ରଦ କରିବା ସୁପ୍ରିମକୋର୍ଟର ପରିସରର ବହିର୍ଭୁକ୍ତ ଅଟେ ।

ଏହପରି ତାଙ୍କର ପ୍ରଦତ୍ତ ବିଚାରଧାରାରୁ ବହୁ ଉଦାହରଣ ଦିଆଯାଇ ପାରେ । ଯହିଁରୁ ପ୍ରମାଣିତ ହେବ ଯେ, ଜଷ୍ଟିସ ଡଃ ଆନନ୍ଦ ବିଚାର କ୍ଷେତ୍ରରେ ସଦାସର୍ବଦା ନୂତନ ଦିଗନ୍ତର ଅନୁସନ୍ଧାନରେ ଥାଆନ୍ତି । ଏହା ପ୍ରଚଳିତ ସମାଜର ବିଧିବ୍ୟବସ୍ଥା ଓ ପାରିପାର୍ଶ୍ୱିକ ଅବସ୍ଥାରେ ସନ୍ତୁଳନ ଆଣିବାରେ ସହାୟକ ହୋଇଥାଏ । ଜଷ୍ଟିସ ଆନନ୍ଦଙ୍କର ବିଚାରଧାରାର ମୂଳମନ୍ତ୍ର ହେଲା–ପ୍ରତ୍ୟେକ କ୍ଷେତ୍ରରେ 'ଦରକାର' ହେଲେ ବିଚାରାଳୟ ନୀତିଗତ ଓ ନିଷ୍ଠାପୂର୍ବକ ସାମାଜିକ ଦାୟିତ୍ୱ ସମ୍ପାଦନ କରିବାକୁ ଯାଇ ଆଇନ ପରିସର ମଧ୍ୟରେ ରହି 'ହସ୍ତକ୍ଷେପ' କରିପାରିବ ।

ନିକଟ ଅତୀତରେ ଏହି ସନ୍ଦର୍ଭର ଲେଖକ ସୌଭାଗ୍ୟକ୍ରମେ ଜଷ୍ଟିସ କୁଳଦୀପ ସିଂହଙ୍କ ଗହଣରେ ନ୍ୟାୟମୂର୍ତ୍ତି ଡଃ ଆନନ୍ଦଙ୍କର ଦିଲ୍ଲୀ ବାସଭବନରେ ସାକ୍ଷାତକାରର ସୁଯୋଗ ଲାଭ କରିଥିଲା । ଏହା ଥିଲା ଏକ ଅପୂର୍ବ ମିଳନପର୍ବ । ନ୍ୟାୟମୂର୍ତ୍ତି କୁଳଦୀପ ସିଂହ ଓ ନ୍ୟାୟମୂର୍ତ୍ତି ଡଃ ଆନନ୍ଦଙ୍କ ମଧ୍ୟରେ ଗୁରୁଶିଷ୍ୟ ପରମ୍ପରାର ଏକ ଝଲକ ଦେଖିବାକୁ ମିଳିଥିଲା । ଲେଖକ ଅନୁଭବ କରିଥିଲା ଯେ କଠୋର, ନିଷ୍ପକ୍ଷ, କର୍ତ୍ତବ୍ୟପରାୟଣ ଓ ପ୍ରଗତିଶୀଳତାର ପ୍ରତୀକ ନ୍ୟାୟମୂର୍ତ୍ତି ଆନନ୍ଦ ମଧ୍ୟ ସାଧାରଣ ସ୍ତରରେ ଓ ବିଚାରାଳୟ ପରିସରର ବାହାରେ କେତେ ସରଳ, ଖୁସମିଜାଜ୍ ଓ ବନ୍ଧୁପ୍ରିୟ । ଆଳାପ ଆଲୋଚନାରେ ଡଃ ଆନନ୍ଦଙ୍କର କେତେକ ନିଜସ୍ୱ ଚିନ୍ତାଧାରାର ଆଭାସ ମଧ୍ୟ ପ୍ରକାଶ ପାଇଥିଲା । ଜଷ୍ଟିସ ଆନନ୍ଦ ମନରେ ସମସ୍ତ ନାଗରିକଙ୍କୁ ସ୍ୱଳ୍ପ ବ୍ୟୟରେ କିପରି ନ୍ୟାୟ ଦରବାରର ସମସ୍ତ ସୁବିଧା ଶୀଘ୍ର ମିଳିପାରିବ, ତାହା ସଦା ଜାଗ୍ରତ । ନିର୍ଦ୍ଧନ ଓ ଅବହେଳିତ ବ୍ୟକ୍ତିମାନେ କିପରି ସହଜ ଓ ସୁବିଧାରେ ନ୍ୟାୟ ପାଇ ପାରିବେ, ସେଥିପାଇଁ ତାଙ୍କ ମନ ସଦା ଉଦ୍‌ବେଳିତ । ପ୍ରଚଳିତ ବିଚାର ବ୍ୟବସ୍ଥାରେ ଧନିକ ଗୋଷ୍ଠୀ ବେଶି ଫାଇଦା ଉଠାଉଥିବାର ସେ ଉପଲବ୍ଧି କରି ପାରିଛନ୍ତି । ସେଥିପାଇଁ ଲୋକ ଅଦାଲତ ପରି ଅନ୍ୟାନ୍ୟ ବ୍ୟବସ୍ଥା ମାଧ୍ୟମରେ ନ୍ୟାୟ ମିଳିବା କିପରି ସରଳ ଓ ଦ୍ରୁତ ହେବ ତାହା ତାଙ୍କର ଧ୍ୟେୟ ହେବ । ଆହୁରି ମଧ୍ୟ ଭାରତର ଦୂର ଦୂରାନ୍ତ ପ୍ରାନ୍ତରେ ସୁପ୍ରିମକୋର୍ଟର ସରକିଟ୍ ବେଞ୍ଚ (ଖଣ୍ଡ ପୀଠ) ସ୍ଥାପନ କରି ଲୋକମାନଙ୍କ ନିକଟରେ ନ୍ୟାୟ ପହଞ୍ଚାଇବା ପାଇଁ ବ୍ୟବସ୍ଥା କରିବା ପାଇଁ ସେ କଥାପ୍ରସଙ୍ଗରେ ସୂଚନା ଦେଇଥିଲେ ।

ସ୍ୱାଧୀନ ଭାରତର ଗଣତନ୍ତ୍ର ବ୍ୟବସ୍ଥାରେ ବିଚାର ବିଭାଗର ଗୁରୁତ୍ୱ ଦିନକୁଦିନ ବଢ଼ିବାରେ ଲାଗିଛି । ପ୍ରତ୍ୟେକ ଧରଣର ବିବାଦର ସମାଧାନ ପାଇଁ ଆମକୁ ବିଚାରାଳୟମାନଙ୍କ ଉପରେ ନିର୍ଭର କରିବାକୁ ପଡୁଛି । ବାବ୍ରୀ ମସଜିଦ୍‌ର ଐତିହାସିକ ମକଦ୍ଦମା, ଗୋଆ ଓ ଉତ୍ତର ପ୍ରଦେଶ ବାଚସ୍ପତିମାନଙ୍କ ରାୟର ବୈଧତା, ଦିଲ୍ଲୀ ନଗରୀର ପରିବେଶ ପ୍ରଦୂଷଣ, ଅଲିଭ କଇଁଛର ସୁରକ୍ଷା, ଆଗାମୀ ଶତାବ୍ଦୀ ପାଇଁ ଶିକ୍ଷା–ଏହିପରି କେତେକେତେ ଜନସ୍ୱାର୍ଥ ସମ୍ବଳିତ ମାମଲାର ଚୂଡ଼ାନ୍ତ ନିଷ୍ପତ୍ତି ସୁପ୍ରିମକୋର୍ଟ କରିଥାଏ । ଏହି ପରିପ୍ରେକ୍ଷୀରେ ଆଗାମୀ ଏକ ବିଂଶ ଶତାବ୍ଦୀ ପାଇଁ ବିଚାର ବିଭାଗରେ ନୂତନ ଦିଗଦର୍ଶନ ଦେବାପାଇଁ ଚିନ୍ତାଶୀଳ, ନିର୍ଭୀକ, ନିରପେକ୍ଷ, ଉନ୍ନତ ଓ ଆଦର୍ଶ ବ୍ୟକ୍ତିତ୍ୱର ପ୍ରତୀକ ନ୍ୟାୟମୂର୍ତ୍ତି ଡଃ ଆନନ୍ଦ ଭାରତର ଅଗଣିତ ଜନତାଙ୍କର ଆଶା ଓ ଆକାଙ୍କ୍ଷାକୁ ପୂରଣ କରି ପାରିବେ ବୋଲି ଆଶା କରାଯାଏ । ତାଙ୍କପରି ବିଜ୍ଞ ଓ ପରିପକ୍ୱ ବ୍ୟକ୍ତି ଏହି ମୁହୂର୍ତ୍ତରେ ଦରକାର ଥିଲା ବୋଲି ଭାରତର ଜନତା ଉପଲବ୍ଧି କରିପାରିଛନ୍ତି ।

ଆଡ୍‌ଭୋକେଟ୍,
କୋଠାରୀ ପଡ଼ିଆ, ଘୋଡ଼ା, କଟକ–୩

# ଆଦିବାସୀ ଅଞ୍ଚଳରେ ପ୍ରାଥମିକ ଶିକ୍ଷା

**ଶ୍ରୀ ପୃଥ୍ୱୀଶ୍ କୁମାର ସିଂହ**

ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ (ଡ଼ି:ପି:ଇ:ପି:) ଏକ ସୁଚିନ୍ତିତ ଯୋଜନା । ସମାଜର ବାସ୍ତବ ପରିସ୍ଥିତି ଓ ସମସ୍ୟାର ଅନୁଶୀଳନ କରି ଏହି କାର୍ଯ୍ୟକ୍ରମର ସ୍ୱରୂପ ଓ କାର୍ଯ୍ୟପନ୍ଥା ନିର୍ଦ୍ଧାରିତ ହୋଇଛି । ଏହି ଯୋଜନାଟି ସମାଜ ପାଇଁ ଉଦ୍ଦିଷ୍ଟ । ମଣିଷ ଜୀବନର ପ୍ରଥମ ତଥା ପ୍ରଧାନ ଆବଶ୍ୟକତା ହେଉଛି ପ୍ରାଥମିକ ଶିକ୍ଷା । ଏହି ଶିକ୍ଷାକୁ ସମସ୍ତଙ୍କ ନିକଟରେ ପହଞ୍ଚାଇବାକୁ ଆମ ସମ୍ବିଧାନ ଓ ସରକାର ଅଙ୍ଗୀକାରବଦ୍ଧ । ଆଞ୍ଚଳିକ ଆବଶ୍ୟକତା ଏବଂ ଶିକ୍ଷା ସମ୍ବନ୍ଧୀୟ ସ୍ଥାନୀୟ ସମସ୍ୟାର ଚିରସ୍ଥାୟୀ ସମାଧାନ ହିଁ ଏହି ଶିକ୍ଷା ଯୋଜନାର ଲକ୍ଷ୍ୟ । ସ୍ୱାଧୀନତାପ୍ରାପ୍ତି ପରଠାରୁ ପ୍ରାଥମିକ ଶିକ୍ଷା ବ୍ୟବସ୍ଥାର ପରିମାଣାତ୍ମକ ଅଭିବୃଦ୍ଧି ଘଟିଥିଲେ ମଧ୍ୟ ତାହା ଅଞ୍ଚଳ ଓ ଅଞ୍ଚଳ ମଧ୍ୟରେ ଏବଂ ସାମାଜିକ ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ସମଭାବରେ ସମ୍ପ୍ରସାରଣ ହୋଇନାହିଁ । କେତେକ ଅଞ୍ଚଳ ଓ ପଛୁଆ ଗୋଷ୍ଠୀ, ଯଥା–ଆଦିବାସୀ, ହରିଜନ ପ୍ରଭୃତି ପ୍ରାଥମିକ ଶିକ୍ଷା ସୁଯୋଗଲାଭରୁ ବଞ୍ଚିତ ହେଉଛନ୍ତି। ଏହାଛଡ଼ା ପ୍ରାଥମିକ ଶିକ୍ଷାଲାଭର ସୁଯୋଗ ଥିଲେ ମଧ୍ୟ କେତେକ ଅଞ୍ଚଳ ଏହାର ସମ୍ପୂର୍ଣ୍ଣ ସୁଯୋଗ ମଧ୍ୟ ନେଇପାରୁ ନାହାନ୍ତି ।

ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ଯେଉଁସବୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ରହିଛି, ତନ୍ମଧ୍ୟରୁ ବାଳିକା ଶିକ୍ଷା ଓ ଆଦିବାସୀ ବାଳକ ଓ ବାଳିକାମାନଙ୍କ ଶିକ୍ଷା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ପ୍ରାଥମିକ ସ୍କୁଲକୁ ୬–୧୪ ବର୍ଷର ସମସ୍ତ ବାଳିକା ଓ ଆଦିବାସୀ ପିଲାଙ୍କୁ କିପରି ନାମ ଲେଖାଇ ଅଣାଯାଇ ପାରିବ ତଥା ଶିକ୍ଷା କ୍ଷେତ୍ରରେ ସେମାନେ ସଫଳତା ହାସଲ କରିପାରିବେ, ସେଥିପାଇଁ ଜାତୀୟ ଶିକ୍ଷାନୀତି (୧୯୮୬) ଓ କାର୍ଯ୍ୟକାରୀ ଯୋଜନା ୧୯୯୨ରେ ସ୍ୱତନ୍ତ୍ର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏସବୁକୁ ଦୃଷ୍ଟିରେ ରଖି ସରକାର ଆଦିବାସୀ ଅଞ୍ଚଳରେ ପ୍ରାଥମିକ ଶିକ୍ଷା ପ୍ରସାରକୁ ଅଗ୍ରାଧିକାର ଦେଇଛନ୍ତି ।

୧୯୯୧ ଜନଗଣନା ଅନୁସାରେ ଓଡ଼ିଶାରେ ମୋଟ୍ ଆଦିବାସୀ ଲୋକସଂଖ୍ୟା ୭୦,୩୨,୨୧୪ । ସେଥିମଧ୍ୟରୁ ଛଅବର୍ଷ ମଧ୍ୟରେ ଥିବା ବାଳକ ବାଳିକା ସଂଖ୍ୟା ୧୩,୨୬,୨୮୮ । ଛଅବର୍ଷରୁ ଅଧିକା ଆଦିବାସୀଙ୍କ ସଂଖ୍ୟା ୫୭,୦୫,୯୨୬ । ମୋଟ୍ ଆଦିବାସୀ ସାକ୍ଷର ସଂଖ୍ୟା ୧୨,୭୨,୮୬୩ । ତନ୍ମଧ୍ୟରୁ ପୁରୁଷ ସାକ୍ଷରତା ହାର ୩୪,୯୪ ପ୍ରତିଶତ ଓ ମହିଳା ସାକ୍ଷରତା ହାର ୨୨·୩୧ ପ୍ରତିଶତ ।

ଏସବୁ ଅନୁଧ୍ୟାନରୁ ଜଣାପଡ଼େ, ଆଦିବାସୀ ଅଞ୍ଚଳର ମହିଳା ଓ ପୁରୁଷ ସାକ୍ଷରତା ହାର ଦେଶ ତଥା ରାଜ୍ୟର ସାକ୍ଷରତା ହାର ତୁଳନାରେ ଯଥେଷ୍ଟ କମ୍ । ଆଦିବାସୀ ମହିଳା ସାକ୍ଷରତା ବିଶେଷ ଭାବେ ଅଗ୍ରଗତି କରିପାରୁ ନାହିଁ । କୋରାପୁଟ ଜିଲ୍ଲାରେ ମହିଳା ସାକ୍ଷରତା ହାର ୮·୯୩ ପ୍ରତିଶତ ଓ କଳାହାଣ୍ଡିରେ ମହିଳା ସାକ୍ଷରତା ହାର ୪·୪୮ ପ୍ରତିଶତ । ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ଆଦିବାସୀମାନେ ପାରମ୍ପରିକ ରୂପେ ରହି ଆସିଥିବାରୁ ପ୍ରଚଳିତ ବ୍ୟବସ୍ଥା ଭିତରେ ସେମାନେ ଅଗ୍ରଗତି କରିପାରୁ ନାହାନ୍ତି । ଏକ ପକ୍ଷରେ ପୁରୁଷାନୁକ୍ରମେ ଚଳିଆସୁଥିବା ପ୍ରଥା, ପରମ୍ପରା ଓ ଚଳଣିର ମୋହ ଏବଂ ଅନ୍ୟ ପକ୍ଷରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଓ ସମାଜ ବ୍ୟବସ୍ଥା ଭିତରେ ନିଜକୁ ପ୍ରତିଷ୍ଠିତ କରିବା କ୍ଷେତ୍ରରେ ଉପୁଜୁଥିବା ସମସ୍ୟା ଆଦିବାସୀ ସମାଜକୁ ବଡ଼ ସଙ୍କଟରେ ପକାଇ ଦେଇଛି । ବର୍ତ୍ତମାନ ସାରା ଭାରତରେ ୪୫୦ ପ୍ରକାର ଆଦିବାସୀ ଗୋଷ୍ଠୀ ନିଜର ସ୍ୱତନ୍ତ୍ର ଭାଷା, ଚଳଣି ପ୍ରଥା ଓ ପରମ୍ପରାକୁ ନେଇ ରହିଚନ୍ତି ଏବଂ ଭିନ୍ନ ଭିନ୍ନ ଆର୍ଥିକ ସାମାଜିକ ପରିବେଶରେ ଏମାନେ ସମ୍ପର୍କିତ । ଓଡ଼ିଶାରେ ୬୨ ପ୍ରକାର ଆଦିବାସୀ ଗୋଷ୍ଠୀ ମଧ୍ୟରୁ ଗୋଣ୍ଡ, ସାନ୍ତାଳ ପରି ସଂଖ୍ୟାଗରିଷ୍ଠ ଆଦିବାସୀ ଗୋଷ୍ଠୀ ତୁଳନାତ୍ମକ ଭାବେ ପରିବର୍ତ୍ତନଶୀଳ ହୋଇ ଅଗ୍ରସର କରୁଥିବା ବେଳେ ବଣ୍ଡା, ପରଜା, ସଉରା, ଜୁଆଙ୍ଗ, ଭୂୟାଁ, କୁଟିଆ, ଡଙ୍ଗିଆ, ଭୁଜିଆ, ଡିଡାୟୀ, ଗଦବା ପ୍ରଭୃତି ସଂଖ୍ୟାଲଘୁ ଗୋଷ୍ଠୀ ନିଜର ସୀମିତ ଅର୍ଥନୀତି ଓ ଗୋଷ୍ଠୀଗତ ଜୀବନ ଉପରେ ସୀମାବଦ୍ଧ । ଦେଖାଯାଉଛି ଯେ କେତେକ ଆଦିବାସୀ ଗୋଷ୍ଠୀ ସମୃଦ୍ଧ ହୋଇଥିବା ବେଳେ ଆଉ କେତେକ ବର୍ତ୍ତମାନ ସୁଦ୍ଧା ଅନଗ୍ରସର ହୋଇ ରହିଚନ୍ତି । ଏଣୁ ଶିକ୍ଷା, ଅର୍ଥନୀତି ଓ କ୍ଷମତାର ଭିତ୍ତି ଅନୁସାରେ ଆଦିବାସୀ ସମାଜରେ ମଧ୍ୟ ବିଭିନ୍ନତା ଓ ବିସମତା ଦେଖାଦେଇଛି । ଏ କ୍ଷେତ୍ରରେ କ୍ଷମତାଶାଳୀ ଆଦିବାସୀ ଓ ଅନ୍ୟ ଆଦିବାସୀମାନଙ୍କୁ କ୍ଷମତାଶାଳୀ କରି ସମୃଦ୍ଧ କରିବାର ଆବଶ୍ୟକତା ରହିଛି ବୋଲି ରାଜ୍ୟ ସରକାର ଉପଲବ୍ଧି କରି ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମକୁ ଅଗ୍ରାଧିକାର ଦେଇଛନ୍ତି ।

ସମ୍ପ୍ରତି ସାରା ଭାରତରେ ୧୯୯୩ ମସିହାରୁ ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ୬–୧୪ବର୍ଷ ବର୍ଷର ସମସ୍ତ

ପିଲାଙ୍କୁ ପ୍ରାଥମିକ ବିଦ୍ୟାଳୟକୁ ଆଣିବା, ନିୟମିତ ଭାବେ ସେମାନଙ୍କୁ ପଢ଼ାର ଶିକ୍ଷଣର ସର୍ବନିମ୍ନ ଯୋଗ୍ୟତା ହାସଲ କରିବା ପାଇଁ ଏହି କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ୧୯୯୩ରୁ ୧୯୯୫ ମସିହା ମଧ୍ୟରେ ଭାରତରେ ସାତୋଟି ରାଜ୍ୟରେ ଏହି କାର୍ଯ୍ୟକ୍ରମ ଚାଲୁ ରହିଛି । ୧୯୯୬–୯୭ ମସିହାଠାରୁ ଓଡ଼ିଶାରେ ଏହି କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ଏହି କାର୍ଯ୍ୟକ୍ରମରେ ଆଦିବାସୀ ପିଲାଙ୍କ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଉପୁଜୁଥିବା ବିଭିନ୍ନ ସମସ୍ୟାଗୁଡ଼ିକ ସମ୍ପର୍କରେ ଅବହିତ ହୋଇ ତା'ର ସମାଧାନ କରାଯିବାର ଯୋଜନା ରହିଛି ।

ଆଦିବାସୀ ଅଞ୍ଚଳରେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ଜନ ଜାଗରଣ ସୃଷ୍ଟି କରିବା, ଶିକ୍ଷକମାନଙ୍କୁ ତାଲିମ ଦେବା, ଆଦିବାସୀ ପିଲାଙ୍କୁ ଶିକ୍ଷାଦାନ କରିବା ପାଇଁ ଶିକ୍ଷକମାନଙ୍କୁ ନୂତନ ତାଲିମ ଦେବା ସହ ସ୍ଥାନୀୟ ସଂସ୍କୃତି ଓ ସାଧନ ଭିତ୍ତିରୁ ଶିକ୍ଷଣ ସାମଗ୍ରୀ ପ୍ରସ୍ତୁତ କରିବା, ଗ୍ରାମ ଶିକ୍ଷା କମିଟି, ମହିଳା ଓ ଆଦିବାସୀ ପିତାମାତାଙ୍କୁ ସକ୍ରିୟ କରିବା, ଆଦିବାସୀ ଗାଁରେ ଜନ ସହଯୋଗରେ ଗ୍ରାମସଭା, ମହିଳା ସମିତି କେନ୍ଦ୍ର ଗଠନ କରି ପ୍ରାଥମିକ ସ୍କୁଲଗୁଡ଼ିକୁ ଗ୍ରାମର ଶିକ୍ଷା ଓ ସଂସ୍କୃତିର କେନ୍ଦ୍ର ରୂପେ ପରିଣତ କରିବା ହେଉଛି ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମର ମୂଳଲକ୍ଷ୍ୟ ।

୧୯୯୭–୯୮ ବର୍ଷରେ ଡି.ପି.ଇ.ପି. ତରଫରୁ ୨୯ ଗୋଟି ଆଦିବାସୀ ବହୁଳ ବ୍ଲକରେ ୩୨୦୦ ଜଣ ପ୍ରାଥମିକ ଶିକ୍ଷକଙ୍କୁ ଆଦିବାସୀ ଶିକ୍ଷା ସମ୍ପର୍କରେ ତାଲିମ ଦିଆଯାଇଛି । ଗଜପତି ଜିଲ୍ଲାର ଲାଞ୍ଜିଆ ସଉରା ଅଞ୍ଚଳ ପାଇଁ ସଉରା ଭାଷାରେ ପ୍ରଥମ ଶ୍ରେଣୀ ପିଲାଙ୍କ ନିମନ୍ତେ ପାଠ୍ୟ ପୁସ୍ତକ ପ୍ରସ୍ତୁତ କରାଯାଇଛି । ବ୍ୟାପକ ଭାବେ ଆଦିବାସୀ ଅଞ୍ଚଳରେ ଜନ ସଚେତନତା କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ଭୁବନେଶ୍ୱର ସାହାଯ୍ୟରେ ଭାଷା ସର୍ବେକ୍ଷଣ କାର୍ଯ୍ୟକ୍ରମ କେନ୍ଦୁଝର, କଳାହାଣ୍ଡି, ଗଜପତି ଓ ରାୟଗଡ଼ା ଜିଲ୍ଲାରେ କାର୍ଯ୍ୟକାରୀ କରାଯାଉଛି ।

୧୯୯୮–୯୯ ବର୍ଷରେ ମୋଟ୍ ୫୫ଟି ବ୍ଲକ୍‌ରେ ଆଦିବାସୀ ଅଞ୍ଚଳର ପ୍ରାଥମିକ ଶିକ୍ଷକଙ୍କୁ ଆଦିବାସୀ ଶିକ୍ଷା ତାଲିମ ପ୍ରଦାନ ସଙ୍ଗେ ସଙ୍ଗେ ଆଶ୍ରମ ସ୍କୁଲ ଶିକ୍ଷକମାନଙ୍କୁ ମଧ୍ୟ ତାଲିମ ଦେବା ବ୍ୟବସ୍ଥା ରଖାଯାଇଛି । କନ୍ଧ ଭାଷାରେ ପ୍ରାଥମିକ ପୁସ୍ତକ ରଚନା ସଙ୍ଗେ ସଙ୍ଗେ ଅତିରିକ୍ତ ପଠନ ସାମଗ୍ରୀର ଯୋଜନା ହାତକୁ ନିଆଯାଇଛି । ମାଗଣାରେ ପାଠ୍ୟ ପୁସ୍ତକ ପାଠ୍ୟୋପକରଣ ଯୋଗାଇ ଦିଆଯାଉଛି । ଦୁର୍ଗମ ଅଞ୍ଚଳରେ ଶିକ୍ଷକମାନଙ୍କ ପାଇଁ ବାସଗୃହ ନିର୍ମାଣ କରାଯିବାର ବ୍ୟବସ୍ଥା କରାଯାଇଛି ।

---

ସୂଚନା ଅଧିକାରୀ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଭୁବନେଶ୍ୱର

### ଶିଶୁ ନିର୍ଯ୍ୟାତନା ନିରାକରଣ ସଂପର୍କରେ ଆଲୋଚନା ଚକ୍ର

ଶିଶୁ ନିର୍ଯ୍ୟାତନା ନିରାକରଣ ସଂପର୍କରେ ଏକ ଆଲୋଚନା ଚକ୍ର ସଂପ୍ରତି ଭୋଗରାଇ ଭବନଠାରେ "ଇନର ହୁଇଲ" କ୍ଲବ୍ ପକ୍ଷରୁ ଅନୁଷ୍ଠିତ ହୋଇଯାଇଛି । ଏଥିରେ ରାଜ୍ୟ ଶ୍ରମ ଓ ନିୟୋଜନ ମନ୍ତ୍ରୀ ଶ୍ରୀ ଦୁର୍ଗାଶଙ୍କର ପଟ୍ଟନାୟକ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ସମାଜରେ ଅବହେଳିତ ଶିଶୁମାନଙ୍କର ଉତ୍ଥାନ ଓ ଉନ୍ନତି ପାଇଁ ଇନର ହୁଇଲ କ୍ଲବର ଉଦ୍ୟମକୁ ପ୍ରଶଂସା କରିଥିଲେ । ଶ୍ରୀ ପଟ୍ଟନାୟକ ରାସ୍ତାପାର୍ଶ୍ୱରେ ଅବସ୍ଥିତ ହୋଟେଲ ଏବଂ ଢାବା, ଇଂଟା କାରଖାନା, ଆତସବାଜି କାରଖାନାମାନଙ୍କରେ ଶିଶୁ ଶ୍ରମିକ ବୃଦ୍ଧି ପାଉଥିବାରୁ ଉଦ୍‌ବେଗ ପ୍ରକାଶ କରିଥିଲେ । ସରକାରଙ୍କ ପକ୍ଷରୁ ସେମାନଙ୍କ ଉତ୍ଥାନ ପାଇଁ ନିଆଯାଉଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ମନ୍ତ୍ରୀ ଶ୍ରୀ ପଟ୍ଟନାୟକ ସୂଚନା ଦେଇଥିଲେ ।

ସମ୍ମାନିତ ଅତିଥି ରୂପେ ଯୋଗ ଦେଇ ରାଜ୍ୟ ଶ୍ରମ ଓ ନିୟୋଜନ ଶାସନ ସଚିବ ଶ୍ରୀ ଅଜିତ କୁମାର ତ୍ରିପାଠୀ ରାସ୍ତାକଡର ଅବହେଳିତ ଶିଶୁମାନଙ୍କର ସମସ୍ୟା ନିରାକରଣ ପାଇଁ ଇନର ହୁଇଲ ପକ୍ଷରୁ ଉଦ୍ୟମ ଆରମ୍ଭ କରିବାକୁ ପରାମର୍ଶ ଦେଇଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ୟୁନିସେଫର ପ୍ରକଳ୍ପ ନିର୍ଦ୍ଦେଶକ ସୁଜନ୍ୟା ରଥ ଆଲୋଚନା ଚକ୍ରରେ ଅଂଶ ଗ୍ରହଣ କରିଥିଲେ । ଇଣ୍ଡର ସିଟି ମିଲ୍‌ସ ଅଧ୍ୟକ୍ଷା ଡଃ ଶ୍ରୀମତୀ ଦୀପା ପାତ୍ରୀ ରାସ୍ତାକଡ ଶିଶୁମାନଙ୍କ ପାଇଁ ନିଆଯାଇଥିବା ପଦକ୍ଷେପ ସଂପର୍କରେ ସୂଚନା ଦେଇଥିଲେ । ସଭାନେତ୍ରୀ ଶ୍ରୀମତୀ ମଂଜୁଳା ମିଶ୍ର ବିଭିନ୍ନ ପ୍ରତିଯୋଗିତାରେ କୃତୀ ପ୍ରତିଯୋଗୀଙ୍କର ନାମ ଘୋଷଣା କରିଥିଲେ ।

# ସଫଳ କାହାଣୀ

## ବିକାଶ ପଥେ ବଲ୍ଲବ ଗ୍ରାମ

ଗନ୍ଦିଆ ବ୍ଲକ୍ ଅଧୀନସ୍ଥ ବାଇସିଆଁ ଗ୍ରାମ ପଞ୍ଚାୟତରେ ବଲ୍ଲବ ଗ୍ରାମ । ଏହି ଗ୍ରାମରେ ୨୮୦ଟି ପରିବାରର ୧୫୦୦ ଲୋକ ବାସ କରନ୍ତି । ଗ୍ରାମର ଲୋକମାନେ ସମ୍ପୂର୍ଣ୍ଣ ଭାବରେ କୃଷି ଉପରେ ନିର୍ଭରଶୀଳ । ଗ୍ରାମବାସୀମାନଙ୍କର ଚଳଣି ଓ କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ ମନେହୁଏ ଗ୍ରାମଟି ଏକ ଆଦର୍ଶ ଗ୍ରାମ । ଗ୍ରାମରେ ଥିବା ଯୁବକ ସଙ୍ଘଟି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟରେ ବ୍ୟସ୍ତ । ଏହି ଯୁବକ ସଙ୍ଘଟି ଗଠନମୂଳକ କାର୍ଯ୍ୟଲାଗି ସାରା ରାଜ୍ୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି ପୁରସ୍କୃତ ହେବାର ଗୌରବ ଅର୍ଜନ କରିଛି । ଯୁବକ ସଙ୍ଘ ଗ୍ରାମର ରାସ୍ତା, ପତିତ ଜଙ୍ଗଲ ଉଦ୍ଧାର, ସ୍କୁଲ ଗୃହ ମରାମତି ଇତ୍ୟାଦି କାମରେ ଗ୍ରାମବାସୀମାନଙ୍କ ସହଯୋଗ ନେଇ ଲାଗି ପଡ଼ିଥାନ୍ତି । ଗ୍ରାମବାସୀମାନେ ଗୋଟିଏ ପରିବାରର ଲୋକଭଳି ଚଳନ୍ତି । ଏହି ଗ୍ରାମର ବିଭିନ୍ନ ବିବାଦ ଆପୋଷୀ ମିଳାମିଶା ମାଧ୍ୟମରେ ଫଇସଲା କରାଯାଉଥିବାରୁ କୋର୍ଟ କଚେରୀକୁ ମାଲି ମୋକଦ୍ଦମା କରିବାପାଇଁ ଲୋକମାନେ ଯାଆନ୍ତି ନାହିଁ ।

ଗ୍ରାମବାସୀମାନେ ପତିତ ଜଙ୍ଗଲ ଉଦ୍ଧାର କରିବା ପାଇଁ ଆଗ୍ରହ ପ୍ରକାଶ କରିଥାନ୍ତି । ମୁଖ୍ୟମନ୍ତ୍ରୀଙ୍କର ଘୋଷଣା ଅନୁଯାୟୀ ଜଙ୍ଗଲ ସୃଷ୍ଟି କରିବା ଏହି ଗ୍ରାମବାସୀଙ୍କର ଲକ୍ଷ୍ୟ । ଗ୍ରାମ ନିକଟସ୍ଥ ୨୦ ଏକର ପତିତ ଜଙ୍ଗଲକୁ ରକ୍ଷା କରିବା ସହିତ ୫୦ ଏକର ଜଙ୍ଗଲରେ ନୂତନ ବୃକ୍ଷ ରୋପଣ କରିଛନ୍ତି । ଗ୍ରାମବାସୀମାନେ ପାଳିକରି ଜଙ୍ଗଲ ଜଗିବା ଦାୟିତ୍ୱ ନେଇଥାନ୍ତି । ବୃକ୍ଷଗୁଡ଼ିକ ପକ୍ୱ ଅବସ୍ଥା ଆସିଲେ ସେଥିରୁ ଉତ୍ପାଦିତ ଅର୍ଥ ଗ୍ରାମର ସାମୂହିକ କାମରେ ବିନିଯୋଗ କରିବାପାଇଁ ସଂକଳ୍ପବଦ୍ଧ ।

ଏହି ଗ୍ରାମରେ ଗୋଟିଏ ପ୍ରାଥମିକ ସ୍କୁଲ ଅଛି । ସରକାରଙ୍କର ଅନୁଦାନକୁ ଅପେକ୍ଷା ନ କରି ଗ୍ରାମ ପାଣ୍ଠିର ଅର୍ଥ ଓ ଶ୍ରମଦାନ ଫଳରେ ସ୍କୁଲ ଗୃହଟି ପକ୍କାଗୃହରେ ପରିଣତ ହୋଇ ପାରିଛି । ଏହି ସ୍କୁଲରେ ଛାତ୍ରଛାତ୍ରୀ ସଂଖ୍ୟା ଦୃଷ୍ଟିରୁ ଅଧିକ ଗୃହର ଆବଶ୍ୟକତା ଥିବାରୁ ଗୋଟିଏ ପ୍ରକୋଷ୍ଠ ନିର୍ମାଣ କରିବା ପାଇଁ ସରକାର ୫୦,୦୦୦ ଟଙ୍କା ଅନୁଦାନ ପ୍ରଦାନ କରିଛନ୍ତି । ଗ୍ରାମବାସୀମାନେ ଏହି ଅର୍ଥ ଏବଂ ନିଜର ଶ୍ରମଦାନ ଦ୍ୱାରା ଗୋଟିଏ ପ୍ରକୋଷ୍ଠ ନିର୍ମାଣ କରିବାପାଇଁ ଉଦ୍ୟମ କରୁଛନ୍ତି ।

ଗ୍ରାମ୍ୟ କମିଟି ମାଧ୍ୟମରେ ଏହି ଗ୍ରାମରେ ଗୋଟିଏ ଗ୍ରାମ୍ୟ ବ୍ୟାଙ୍କ୍ ସୃଷ୍ଟି ହୋଇଛି । ଏହି ଗ୍ରାମରେ ଥିବା କୋଠ ସମ୍ପତ୍ତିକୁ ସତ୍‌ମାର୍ଗରେ ବିନିଯୋଗ କରି ଗ୍ରାମ୍ୟ ବ୍ୟାଙ୍କର ଆୟବୃଦ୍ଧି କରିବାରେ ଗ୍ରାମବାସୀମାନେ ଉଦ୍ୟମରତ । ଏହି ଗ୍ରାମ୍ୟ ବ୍ୟାଙ୍କ୍‌ରେ ବର୍ତ୍ତମାନ ୮୦ ହଜାର ଟଙ୍କା ଗଚ୍ଛିତ ଅଛି । ଏହି ଅର୍ଥକୁ ସେମାନେ ଗ୍ରାମର ସାମଗ୍ରିକ ଉନ୍ନତି ନିମନ୍ତେ ବ୍ୟୟ କରନ୍ତି । ଯେଉଁ ସମୟରେ ଗ୍ରାମର ଗରୀବ ଲୋକମାନଙ୍କୁ କାମଧନ୍ଦା ମିଳେ ନାହିଁ, ସେହି ସମୟରେ ଗ୍ରାମ ଫଣ୍ଡ ଟଙ୍କାକୁ ବ୍ୟୟ କରି ଗ୍ରାମ ରାସ୍ତା ଓ ଅନ୍ୟାନ୍ୟ ଉନ୍ନୟନ କାର୍ଯ୍ୟ କରିବା ସହିତ ଗରୀବ ଲୋକମାନଙ୍କର କର୍ମର ବ୍ୟବସ୍ଥା କରିଥାନ୍ତି । ଏହି ଗ୍ରାମ୍ୟ ବ୍ୟାଙ୍କ୍ ଅର୍ଥରୁ ଗରୀବ ଲୋକମାନଙ୍କୁ ସ୍ୱଳ୍ପ ସୁଧରେ ଋଣ ମଧ୍ୟ ଦେଇଥାନ୍ତି । ଗାଁର ସାମୟିକ ଅର୍ଥକୁ ବ୍ୟୟ କରି ପ୍ରତ୍ୟେକ ବର୍ଷ ବ୍ଲକରେ ଥିବା ମଧ୍ୟ ଇଂରାଜୀ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ନେଇ ଗୋଟିଏ ଶିଶୁମେଳା ଓ କୃତୀ ପ୍ରତିଯୋଗୀମାନଙ୍କୁ ପୁରସ୍କୃତ କରିଥାନ୍ତି ।

ଗ୍ରାମରେ ନିଶା ନିବାରଣ, ପରିବାର କଲ୍ୟାଣ ଓ ସ୍ୱଳ୍ପ ସଞ୍ଚୟ ଉପରେ ଗୁରୁତ୍ୱ ଆରୋପ କରାଯାଉଅଛି । ସନ୍ଧ୍ୟା ସମୟରେ ଗ୍ରାମବାସୀମାନେ ଏକତ୍ରିତ ହୋଇ ଗ୍ରାମର ଭଲମନ୍ଦ ବିଷୟରେ ବିଶେଷତଃ ପୋଖରୀ ସଫା କରିବା, ରାସ୍ତା ଓ ବିଦ୍ୟାଳୟ ମରାମତି କରିବା ଏବଂ ଜଙ୍ଗଲ ବୃକ୍ଷ ରୋପଣ ବିଷୟରେ ଆଲୋଚନାମାନ କରିଥାନ୍ତି ।

ଗ୍ରାମ ବିଦ୍ୟାଳୟକୁ ପିଲାମାନଙ୍କୁ ପଠାଇବା ଦାୟିତ୍ୱ ଗ୍ରାମବାସୀମାନଙ୍କର ଏବଂ ମଧ୍ୟାହ୍ନ ଭୋଜନ ସୁଷମ ବଣ୍ଟନ କାର୍ଯ୍ୟ ତଦାରଖ କରିବା ଏକ ଦୈନନ୍ଦିନ କାର୍ଯ୍ୟ । ସରକାରଙ୍କର ବିଭିନ୍ନ ଉନ୍ନୟନମୂଳକ ଓ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ସୁଫଳ ଉପଭୋଗ କରିଥାନ୍ତି ଏହି ଗ୍ରାମବାସୀମାନେ । ବିଭିନ୍ନ ଯୋଜନାରେ ଆର୍ଥିକ ସାହାଯ୍ୟ ପାଇ ହିତାଧିକାରୀମାନେ ଉପକୃତ ହୋଇଥାନ୍ତି ।

ଗ୍ରାମବାସୀମାନେ ସନ୍ଧ୍ୟା ସମୟରେ ବୈଠକ କରିବା ପାଇଁ ଏକ ଗୃହ ନିର୍ମାଣ କରିବା ନିମନ୍ତେ ସଂକଳ୍ପବଦ୍ଧ ।

---

**ଶ୍ରୀ ଅର୍ଜୁନ ମଲ୍ଲିକ,**
**ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,**
**ଢେଙ୍କାନାଳ**

# ଚିତ୍ରସେନର ସ୍ୱପ୍ନ ସତ୍ୟ ହେଲା

କେନ୍ଦୁଝର ଜିଲ୍ଲା ଚମ୍ପୁଆ ଉପଖଣ୍ଡର ଚମ୍ପୁଆ ସଦର ବ୍ଲକ୍ ଅନ୍ତର୍ଗତ କାଣ୍ଡିଆଗଳା ଗ୍ରାମ । ଗ୍ରାମରେ ୧୨୫ଟି ପରିବାର ସହିତ ପ୍ରାୟ ୨୦୦୦ ଲୋକ ବସବାସ କରନ୍ତି । ସମସ୍ତେ ପ୍ରାୟ କୃଷି ଉପରେ ନିର୍ଭର କରି ଚଳନ୍ତି ।

ସେହି ଗ୍ରାମର ହରିଜନ ସମ୍ପ୍ରଦାୟର ଅକ୍ଷୟ ବେହେରା । ଛୋଟ ଏକ ସ୍ଥାର ଦୋକାନ ମାଧ୍ୟମରେ ନିଜର ପରିବାର ପୋଷଣ କରନ୍ତି । ଜମିବାଡ଼ିରୁ ସ୍ୱଳ୍ପ ଆୟ ବର୍ଷକ ଖାଇବା ପାଇଁ ଚଳେ ନାହିଁ । ନିଜର ଦୁଇ ପୁଅ, ବାପା, ମା, ସ୍ୱାମୀ, ସ୍ତ୍ରୀ ସାଥୀ ଛ'ଜଣିଆ ସଂସାରକୁ ଚଳାଇବା ତାଙ୍କ ପକ୍ଷେ କଷ୍ଟକର ହୋଇ ପଡୁଥାଏ । ଦୀର୍ଘ ୫/୬ ବର୍ଷ ହେଲା ନିୟମିତ ବନ୍ୟା, ମରୁଡ଼ି ଓ ପ୍ରାକୃତିକ ବିପର୍ଯ୍ୟୟ ଦେହି ଉପରେ କୋରଡ଼ା ମାଡ଼ଉଛି ତାଙ୍କ ଅଣ୍ଟା ଭାଙ୍ଗି ଦେଉଥାଏ । ତହିଁରେ ପୁଣି ପିଲା ଦୁହିଁଙ୍କର କଲେଜ୍ ପାଠପଢ଼ା ଖର୍ଚ୍ଚ ଓ ବୃଦ୍ଧ ପିତାମାତାଙ୍କର ଔଷଧ ଖର୍ଚ୍ଚ ଯୋଗାଇବା ପାଇଁ କଷ୍ଟ ହେଉଥାଏ ।

ଆଇ. ଏ. ପାସ୍ ପରେ ବଡ଼ପୁଅ ଚିତ୍ରସେନକୁ ପାଠ ପଢ଼ାଇବା ତାଙ୍କ ପକ୍ଷେ ଆଉ ସମ୍ଭବପର ହେଲାନାହିଁ । ବେକାର ପୁଅକୁ କିଭଳି ଗୋଟିଏ କାମଧନ୍ଦାରେ ଲଗାଇ ଦେବାପାଇଁ ସବୁବେଳେ ଚିନ୍ତା କରୁଥାନ୍ତି । ମାତ୍ର ପାଖରେ କୌଣସି ପୁଞ୍ଜି ନଥାଏ । ଥରେ ତାଙ୍କ ଗାଁକୁ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ଗସ୍ତ ସମୟରେ ବେକାର ପୁଅ ବିଷୟରେ ଜଣାଇ ଏକ ରୋଜଗାର ପନ୍ଥା ଯୋଗାଇ ଦେବାପାଇଁ ଅନୁରୋଧ କରିଥିଲେ । ଗୋଷ୍ଠୀ ଉନ୍ନୟନ ଅଧିକାରୀ ତାଙ୍କ ପୁଅର ଶିକ୍ଷାଗତ ଯୋଗ୍ୟତା ଏବଂ କାର୍ଯ୍ୟଦକ୍ଷତା ପରଖି ବୁଝିବା ପରେ ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା ମାଧ୍ୟମରେ ଜିଲ୍ଲା ଶିଳ୍ପ କେନ୍ଦ୍ରକୁ ଋଣ ପାଇଁ ଆବେଦନ କରିବା ପାଇଁ ପରାମର୍ଶ ଦେଇଥିଲେ । ତାଙ୍କ ପରାମର୍ଶ ଅନୁଯାୟୀ ଚିତ୍ରସେନ ଜିଲ୍ଲା ଶିଳ୍ପ କେନ୍ଦ୍ରକୁ ଋଣ ପାଇଁ ଆବେଦନ କଲା । ୧୯୯୫–୯୬ ଆର୍ଥିକ ବର୍ଷରେ ତା'ର ଦରଖାସ୍ତକୁ ଗ୍ରହଣ କରାଯାଇ ତାକୁ ଏକ ସିମେଣ୍ଟ ଉଦ୍ୟୋଗ ଆରମ୍ଭ କରିବା ପାଇଁ ଋଣ ମଞ୍ଜୁର କରାଗଲା । ୯୫–୯୬ ଆର୍ଥିକ ବର୍ଷରେ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଚମ୍ପୁଆ ଶାଖା ସାହାଯ୍ୟରେ ତାକୁ ମିଳିଲା ୧ ଲକ୍ଷ ଟଙ୍କା । ଉକ୍ତ ଟଙ୍କାକୁ ନେଇ ସେ ଆରମ୍ଭ କଲା 'ନିଉ ସିମେଣ୍ଟ କାଷ୍ଟିଂ ଉଦ୍ୟୋଗ' । ଏହା ମାଧ୍ୟମରେ ଟାଇଲି, ମୋଜେଇ, ପାଣିକୁଣ୍ଡ, କୂପନଦ, ଫ୍ଲକ୍ସରୁ, ଝରପାଲି, ସିମେଣ୍ଟ ସ୍ଲେଟ୍, ସାଇଲାଇଟ୍, ସିମେଣ୍ଟ ବିମ୍ ପ୍ରଭୃତି ତିଆରି କରିବା ଆରମ୍ଭ କଲା । ବର୍ତ୍ତମାନ ତା'ର ଉଦ୍ୟୋଗ କାଣ୍ଡିଆଗଳା, କରଞ୍ଜିଆ, ସିଲିପୁଞ୍ଜି, ଭଣ୍ଡ, ସରେଇ ପ୍ରଭୃତି ୨୦ ଖଣ୍ଡ ଗାଁର ସୁବିଧା ପୂରଣ କରିପାରୁଛି ।

ଚିତ୍ରସେନର ଉଦ୍ୟୋଗ ଭଲ ଚାଲିଛି । ତିନୋଟି ମେସିନ୍ ବସାଇଛି । ୮ ଜଣ ମିସ୍ତ୍ରୀ କାମ କରୁଛନ୍ତି । ବର୍ତ୍ତମାନ ସେ ଦିନକୁ ୪୦୦ ଟାଇଲି ଉତ୍ପାଦନ କରୁଛି । ନିକଟରେ ସେ ଆଉ ତିନୋଟି ମେସିନ୍ ବସାଇ ୮୦୦ ଟାଇଲ ଉତ୍ପାଦନର ବ୍ୟବସ୍ଥା କରୁଛି । ତା'ର ମାସକୁ ଆୟ ହେଉଛି ହାରାହାରି ୧୨,୦୦୦ ଟଙ୍କା । ଅନ୍ୟାନ୍ୟ ଖର୍ଚ୍ଚ ଯାଇ ଲାଭ ୫/୬ ହଜାର ଟଙ୍କା ପାଉଛି । ଚମ୍ପୁଆରୁ ଜଷ୍ପା ରାସ୍ତାରେ ଗଲେ କାଣ୍ଡିଆଗଳା ରାସ୍ତା କଡ଼ରେ ପଡ଼ିବ ଚିତ୍ରସେନର 'New cement casting Industry' । ବର୍ତ୍ତମାନ ଆଉ ଘର ଚଳାଇବାରେ ଅସୁବିଧା ନାହିଁ । ସାନଭାଇକୁ ବି. ଏ. ପଢ଼ାଉଛି । ବାପା ବର୍ତ୍ତମାନ ଅସୁସ୍ଥତା ହେତୁ କାମଦାମ କରି ପାରୁନାହାନ୍ତି । ସମୁଦାୟ ପରିବାରର ଦାୟିତ୍ୱ ଚିତ୍ରସେନର । ଋଣ ଟଙ୍କାର ୫୦ ପ୍ରତିଶତ ସେ ସୁଝି ସାରିଲାଣି ଏଇ କେଇବର୍ଷ ଭିତରେ । ଭବିଷ୍ୟତ ପାଇଁ ତା'ର ଅନେକ ଆଶା । ସେ ଅନ୍ୟମାନଙ୍କ ପାଇଁ ଉତ୍ସାହ ଓ ପ୍ରେରଣାର ସ୍ରୋତ ।

ଶ୍ରୀ ପ୍ରମୋଦ କୁମାର ମଲ୍ଲିକ,
ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,
କେନ୍ଦୁଝର

# ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାରେ ଉପକୃତ ସଂଖ୍ୟାଲଘୁ ସମ୍ପ୍ରଦାୟର ଯୁବକ

ଭଦ୍ରକ ଜିଲ୍ଲାରେ ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାରେ ଜଣେ ସଂଖ୍ୟାଲଘୁ ସମ୍ପ୍ରଦାୟର ଯୁବକ ବେନର ଓ ବୋର୍ଡ଼ ଲେଖି ଯାତ୍ରୀ ଜଗତରେ ଚହଳ ପକାଇ ନିଜର ଆତ୍ମନିଯୁକ୍ତି ସହିତ ୧୭ ଜଣ ଲୋକଙ୍କୁ ନିଯୁକ୍ତି ଦେଇଛନ୍ତି । ଗୁଣ୍ଡବାଲି ବାଇପାସ୍‌ଠାରେ ଏକ ରାମ୍ ନାମକ ଜଣେ ଯୁବକ ବି. ଏ. ପାଶ୍ ପରେ ସୁବିରୀ ନକ୍ସି ରଙ୍ଗ ଓ ତୂଳିରେ ବେନର ଓ ସାଇନ୍‌ବୋର୍ଡ଼ ଲେଖା ଆରମ୍ଭ କଲେ । ମାତ୍ର ୧୦ ହଜାର ଟଙ୍କାରେ ବ୍ୟବସାୟ ଆରମ୍ଭ କରିଥିବା ଏହି ଯୁବକ ୨ ବର୍ଷ ତଳେ ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାରୁ ୫୦ ହଜାର ଟଙ୍କା ଭଦ୍ରକ ୟୁନିୟନ ବ୍ୟାଙ୍କ୍ ମାଧ୍ୟମରେ ଋଣ ପାଇ ବର୍ଷକୁ ୨ ଲକ୍ଷ ଟଙ୍କାର କାରବାର କରି ଆୟକର ମଧ୍ୟ ଦେଉଛନ୍ତି । ତାଙ୍କ ବଡ଼ଭାଇ ନିଜାମ୍ ଜଣେ ଆର୍ଟିଷ୍ଟ ଥିବାରୁ ତାଙ୍କ ପରାମର୍ଶ କ୍ରମେ ସେ ବ୍ୟବସାୟ ଦ୍ରୁତ ଗତିରେ ବଢ଼ାଇ ଚାଲିଛନ୍ତି । ଓଡ଼ିଶାର ୩୦ଟି ଯାତ୍ରା ଦଳ ସହିତ କଲିକତାରୁ ଲୋକମାନେ ମଧ୍ୟ ଆସି ବଜାରରେ ବୋର୍ଡ଼ ତିଆରି କରିନେଉଛନ୍ତି । ତାଙ୍କୁ ଖାଲି ପରିସ୍ଥିତି ବୁଝାଇଦେଲେ ସେ ନିଜ ବୁଦ୍ଧିରେ ନିପୁଣ ଚିତ୍ର ଆଙ୍କି ଜୀବନ୍ତ କରିପାରୁଛନ୍ତି । ତାଙ୍କ ପାଖରେ ରହି ବହୁ ପିଲା ଲେଖା ଶିଖିଲାପରେ ଅନ୍ୟଆଡ଼େ ନିଜେ ଦୋକାନ ଖୋଲୁଛନ୍ତି । କେତେ ଜଣ ଗ୍ରାଜୁଏଟ ପିଲା ମଧ୍ୟ ତାଙ୍କ ପାଖରେ ରହି ଲେଖୁଛନ୍ତି । ସେ ଦୁଇ ଭାଇ କେତୋଟି ଓଡ଼ିଆ ଚଳଚ୍ଚିତ୍ରର ମଧ୍ୟ ବୋର୍ଡ଼ ଲେଖି ପ୍ରଶଂସିତ ହୋଇଛନ୍ତି । ଜିଲ୍ଲା ଶିଳ୍ପ କେନ୍ଦ୍ରର ସାଧାରଣ ପରିଚାଳକଙ୍କଠାରୁ ପ୍ରକାଶ, ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାରେ ଲକ୍ଷେ ଟଙ୍କା ପର୍ଯ୍ୟନ୍ତ ଋଣ ମିଳିପାରିବ । ନାବାର୍ଡ଼ର ବାଲେଶ୍ୱରରେ ଥିବା ଏ.ଜି.ଏମ୍. କହନ୍ତି ଜଣେ ହିତାଧିକାରୀ ଯଦି ଏହିପରି ସଫଳ ହୁଏ ତାହେଲେ ବ୍ୟାଙ୍କ୍ ତାଙ୍କୁ ବିନା ଦ୍ୱିଧାରେ ଋଣ ଯୋଗାଇବ । ଯଦି ଏହିପରି ହିତାଧିକାରୀ ଋଣ ସୁଝନ୍ତି ତାହେଲେ ବ୍ୟାଙ୍କର ଆର୍ଥିକ ପରିସ୍ଥିତି ଉଜ୍ଜ୍ୱଳ ହେବା ସହିତ ଅର୍ଥନୀତି ମଜଭୁତ୍ ହୋଇପାରିବ ।

ଶ୍ରୀ ହରମୋହନ ଜେନା,
ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ, ଭଦ୍ରକ

# ସଫଳ ଗୋପାଳକ – ରେବାନନ୍ଦ

କଳାହାଣ୍ଡି ଜିଲ୍ଲାର କେସିଙ୍ଗା ଅନ୍ତର୍ଗତ ଗୁଣ୍ଡେଇ ଗ୍ରାମ ପଞ୍ଚାୟତ ମହକୁମାଟି ଜିଲ୍ଲା ମହକୁମା ଭବାନୀପାଟଣାଠାରୁ ୨୦ କି:ମି: ଦୂରରେ ଭବାନୀପାଟଣା କେସିଙ୍ଗା ପ୍ରଧାନ ରାସ୍ତା କଡ଼ରେ ଅବସ୍ଥିତ। ସେଠାରେ ବାସ କରନ୍ତି ନାମମାତ୍ର ଚାଷୀ ଶ୍ରୀ ରେବାନନ୍ଦ ସାହୁ। ବୟସ ତାଙ୍କର ୩୮ ବର୍ଷ। ଚାଷ ଜମି ତାଙ୍କର ଅଣଜଳ ସେଚିତ ୧ ଏକର ୫୭ ଡେସିମିଲ ଏବଂ ଘରଡ଼ିହ ୪୫ ଡେସିମିଲ ମାତ୍ର। ନିଜର ପରିବାର ପ୍ରତିପୋଷଣ ପାଇଁ ସେ ଗୋପାଳନ ଦିଗରେ ମନ ବଳାଇ ୧୪ଟି ଦେଶୀ ଗାଈ ପାଳିବା ଆରମ୍ଭ କରିଥିଲେ। ଦେଶୀ ଗାଈଙ୍କଠାରୁ ଯାହା ଅଳ୍ପ ପରିମାଣ ଗୋରସ ସଂଗ୍ରହ କରି ବିକ୍ରିଲବ୍ଧ ଅର୍ଥରେ ନିଜର ପରିବାର ପ୍ରତିପୋଷଣ ଖର୍ଚ୍ଚ ମେଣ୍ଟାଇ ଗାଈମାନଙ୍କୁ ଚଳାଉଥିଲେ। ଜଣେ ପଶୁଡାକ୍ତର କେସିଙ୍ଗାଠାରୁ ଆସି ଗାଁରେ ଜର୍ସି ଶୁକ୍ର ଦ୍ୱାରା କୃତ୍ରିମ ପ୍ରଜନନ କରାଇ ଉନ୍ନତ ଜାତୀୟ ଗୋପାଳନ ପାଇଁ ପରାମର୍ଶ ଦେଇଥିଲେ। ସେ ୧୯୮୧ ମସିହାରେ ନିଜର ୧୪ଟି ଯାକ ଗାଈଙ୍କୁ ଜର୍ସି ଶୁକ୍ରାଣୁ ଦ୍ୱାରା କୃତ୍ରିମ ପ୍ରଜନନ କରାଇ ଉନ୍ନତ ଜର୍ସି ବାଛୁରୀ ପାଇଲେ। କ୍ରମାନ୍ୱୟରେ ଜର୍ସି ଗାଈ ପ୍ରତି ଅଧିକ ମନ ବଳାଇ ଦେଶୀ ଗାଈଙ୍କୁ ବିକ୍ରି କରି କେବଳ ଜର୍ସିଗାଈ ନିଜ ଗାଈମାନଙ୍କଠାରୁ ସଂଗ୍ରହ କଲେ। ଜର୍ସି ଗାଈ ହେବା ଦ୍ୱାରା ସେ ପୂର୍ବାପେକ୍ଷା ଅଧିକ ଦୁଗ୍ଧ ଉତ୍ପାଦନ କରି ଗ୍ରାମରେ ଏକ ଦୁଗ୍ଧ ସମବାୟ ସମିତି ଗଠନର ପ୍ରଚେଷ୍ଟା କଲେ। ତାଙ୍କ ସହ ଗ୍ରାମର ଅନ୍ୟାନ୍ୟ ଉଦ୍ୟୋଗୀ ଗୋ–ମହିଷାଦି ପାଳକମାନେ ସମିତିରେ ସାମିଲ ହେବାଦ୍ୱାରା ଗ୍ରାମରେ ଉତ୍ପାଦିତ ଗୋରସକୁ ଭବାନୀପାଟଣା ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଭଲ ଦରରେ ବିକ୍ରି କରି ସମସ୍ତେ ଲାଭବାନ ହେଲେ। ନିଜ ସ୍ତ୍ରୀ ଏବଂ ପିଲାମାନେ ମଧ୍ୟ ଗୋ–ପାଳନ ଦିଗରେ ଉତ୍ସାହିତ ହେଲେ। ଗୋପାଳନ ସହ ଦୁଗ୍ଧ ବ୍ୟବସାୟ ସନ୍ତୋଷଜନକ ଭାବରେ ଚାଲିଲା। ଶ୍ରୀ ସାହୁଙ୍କର ଗାଈ ସଂଖ୍ୟା ଧୀରେ ଧୀରେ ବଢ଼ିବାକୁ ଲାଗିଲା। ଦେଖାଶୁଣା ପାଇଁ ସେ ନିଜ ଗ୍ରାମର ଜଣେ ଗରିବ ପିଲାକୁ ମୂଲିଆ ଭାବରେ ରଖି ଦୁଗ୍ଧ ଉତ୍ପାଦନ ତଥା ବିକ୍ରିବଟାରେ ଅଧିକ ଧ୍ୟାନ ଦେବାକୁ ଲାଗିଲେ। କ୍ରମେ ନିଜର ଆୟ ବଢ଼ିବାରୁ ସେ ପରିବାର ପ୍ରତିପୋଷଣ ସହ ସଞ୍ଚୟ ଦିଗରେ ମନ ବଳାଇଲେ ଏବଂ ବଗିଚା କରି ପରିବା ଉତ୍ପାଦନ ପାଇଁ ଆଗେଇ ଆସିଲେ। ସେ ନିଜ ଅଧ୍ୟବସାୟ ଫଳରେ ଗୋ ସଂଖ୍ୟା ବୃଦ୍ଧି ଘଟାଇ ଅଦ୍ୟାବଧି ୩୦ ଗୋଟି ଅଣ୍ଡିରା ଜର୍ସି ବାଛୁରୀ ଚାଷୀମାନଙ୍କୁ ମାଗଣାରେ ବାଣ୍ଟିଦେଇ ଚାଷ କାର୍ଯ୍ୟରେ ସାହାଯ୍ୟ କଲେ। ଏହାଛଡ଼ା ୩୭ ଗୋଟି ଗାଈ ବିକ୍ରି କରି ହାରାହାରି ଗୋଟିକୁ ୧୦୦୦୦ ଟଙ୍କାରେ ଏବଂ ଅନ୍ୟାନ୍ୟ ୧୨ଟି ଗାଈଙ୍କୁ ଅଧିକ ମୂଲ୍ୟରେ ବିକ୍ରିକରି ପ୍ରାୟ ୧ ଲକ୍ଷ ୫୦ ହଜାର ଟଙ୍କା ଆୟ କଲେ। ବିକ୍ରି ଟଙ୍କାରୁ ଏବଂ ଗୋରସ ବିକ୍ରିଟଙ୍କା ଆୟରୁ ସେ ନିଜର ୧୦ ଡେସିମିଲ ଘରଡ଼ିହରେ ୩ ବଖରା ବିଶିଷ୍ଟ ଏବଂ ୨ଟି ବାରଣ୍ଡା ଥାଇ ୨ ଲକ୍ଷ ୫୦ ହଜାର ଟଙ୍କାରେ ସୁନ୍ଦର ଛାତ ଥାଇ ପକ୍କା ବାସ ଗୃହ ନିର୍ମାଣ କରିପାରିଛନ୍ତି। ଏହାଛଡ଼ା ସ୍ୱତନ୍ତ୍ର ରୋଷେଇ ଗୃହ ଏବଂ ଗୋରୁମାନଙ୍କ ପାଇଁ ମଧ୍ୟ ପକ୍କା ଗୋଶାଳା ନିର୍ମାଣ କରିପାରିଛନ୍ତି। ୩ ଜଣ ମୂଲିଆ ରଖି ଗୋ ସେବା କାମ ଚଳାଇଛନ୍ତି।

ତାଙ୍କର ୧ ଏକର ୫୭ ଡେସିମିଲ ଚାଷ ଜମିରେ ସେ ଧାନ ସହ ମୁଗ, ବିରି ଚାଷ କରିଥାନ୍ତି ଏବଂ ଲୋକଙ୍କ ଜମିରେ ଗାଈ ମାନଙ୍କପାଇଁ ଉନ୍ନତ ଘାସ ଚାଷ କରିଥାନ୍ତି। ଘରଡ଼ିହର ବଳକା ୩୫ ଡେସିମିଲ ଜମିରେ ସେ ଏକ ସେଚକୂପ ଖନନ କରି ତହିଁରେ ଦୈନନ୍ଦିନ ଖର୍ଚ୍ଚ ପାଇଁ ବାଇଗଣ, ଭେଣ୍ଡି, ଶାଗ, ଆଳୁ, ଟମାଟୋ, ଲଙ୍କାମରିଚ, କୋବି, ସୂର୍ଯ୍ୟମୁଖୀ, ଅମୃତଭଣ୍ଡା, କଲରା ଆଦି ପରିବା ଚାଷ କରିଥାନ୍ତି। ନିଜର ଘରଖର୍ଚ୍ଚ ବାଦ୍ ବଳକା ପନିପରିବାକୁ ନିଜ ଆତ୍ମୀୟ ସ୍ୱଜନଙ୍କୁ ମାଗଣାରେ ଦେବା ସହ ବାହାରେ ବିକ୍ରି କରି ମଧ୍ୟ ବେଶ୍ କିଛି ଉପାର୍ଜନ କରିଥାନ୍ତି। ନିଜ ବଗିଚାରେ ବିଭିନ୍ନ ଫଳଗଛ ମଧ୍ୟ ଲଗାଇଛନ୍ତି। ଅଧିକ ଅମଳକ୍ଷମ ୧୭ଟା ଆମ୍ବଗଛ, ୧୭ଟା ପିଜୁଳିଗଛ, ୩ଟା ପଣସ ଗଛ, ୧୦ଟା ଅମୃତ ଭଣ୍ଡା ଗଛ, ସଜନା ଗଛ ଏବଂ ବିଭିନ୍ନ ଜାତୀୟ ଫୁଲଗଛ ଲଗାଇ ବଗିଚାର ଶୋଭା ବର୍ଦ୍ଧନ କରିଛନ୍ତି। ସେ ନିଜ ଚାଷ ଜମିର ଧାନ ବିକ୍ରି କରି ପ୍ରାୟ ୧୩,୦୦୦ ଟଙ୍କା, ମୁଗରୁ ପ୍ରାୟ ୩,୦୦୦ ଟଙ୍କା ଉପାର୍ଜନ କରୁଥିବା ସ୍ଥଳେ ପନିପରିବା ବିକ୍ରିକରି ମାସିକ ୩୦୦ ଟଙ୍କା ଏବଂ ଅମୃତଭଣ୍ଡାରୁ ମାସିକ ୫୦୦ ଟଙ୍କା ଉପାର୍ଜନ କରି ପାରୁଛନ୍ତି। ତାଙ୍କର ୨୮ ଫୁଟ ଗଭୀର ବିଶିଷ୍ଟ କୂପରେ ଗୋଟିଏ ହେଣ୍ଡପମ୍ପ କିଣି ବଗିଚାରେ ପାଣି ମଡ଼ାଇବା ବ୍ୟବସ୍ଥା କରିପାରିଛନ୍ତି।

ବର୍ତ୍ତମାନ ଶ୍ରୀ ସାହୁଙ୍କ ନିକଟରେ ୨ଟି ଉନ୍ନତ ଜାତୀୟ ଜର୍ସି ଗାଈ ଅଛନ୍ତି ଏବଂ ୩ଟି ବାଛୁରୀ ସହ ହଳେ ଜର୍ସି ବଳଦ ଚାଷ ପାଇଁ ରଖିଛନ୍ତି। ଦୈନିକ ସେ ହାରାହାରି ୨୦ ଲିଟର ଦୁଗ୍ଧ ଉତ୍ପାଦନ କରି ବିକ୍ରିରୁ ୨୦୦ ଟଙ୍କା ଉପାର୍ଜନ କରନ୍ତି। ସେ କୌଣସି ବ୍ୟାଙ୍କ୍ ଋଣ ଗ୍ରହଣ କରିନାହାନ୍ତି। ଦୈନିକ ଦୁଗ୍ଧ ବିକ୍ରି ଟଙ୍କାରୁ ଗାଈମାନଙ୍କ ଖାଦ୍ୟ ପଦାର୍ଥ ଖର୍ଚ୍ଚ ବାଦ୍ ଦେଲେ ସେ ହାରାହାରୀ ୫୦ ଟଙ୍କା ହିସାବରେ ମାସକୁ ୧୫୦୦ ଟଙ୍କା ଲାଭ ପାଇଥାନ୍ତି। ନିଜର ଉଦ୍ୟମରେ ସେ ବିକ୍ରି ଲବ୍ଧ ଟଙ୍କା ଏବଂ ପନିପରିବା ଇତ୍ୟାଦି ଆୟରୁ ଏକ ଲକ୍ଷ ଟଙ୍କା ସ୍ଥାନୀୟ ଷ୍ଟେଟ୍ ବ୍ୟାଙ୍କରେ ଜମା କରିପାରିଛନ୍ତି ଏବଂ ଏଲ୍.ଆଇ.ସି: ପ୍ରିମିୟମ ବାବଦକୁ ମାସିକ ୩୦୦ ଟଙ୍କା ବାନ୍ଧିଛନ୍ତି।

ଜଣେ ଉନ୍ନତ ଗୋପାଳକ ଭାବରେ ସେ ଗୋପାଳନ କ୍ଷେତ୍ରରେ ବିଭିନ୍ନ ତାଲିମ ଗ୍ରହଣ କରିଛନ୍ତି। ନିଜ ଗୋରୁଙ୍କ ପାଇଁ ଉନ୍ନତ ଏମ୍: ପି଼ଚେରୀ ଘାସ ଚାଷ କରିବା ସହ ଗୋଖାଦ୍ୟ ଝୁଡ଼ଙ୍ଗ ମଧ୍ୟ ଚାଷ କରି ଗୋଖାଦ୍ୟ ସଂଗ୍ରହ କରିଥାନ୍ତି ଏବଂ ବାହାରୁ ଅନ୍ୟାନ୍ୟ ଗୋଖାଦ୍ୟ କିଣିଥାନ୍ତି। ଗୋପାଳନ କ୍ଷେତ୍ରରେ ଅଧିକ ସାହାଯ୍ୟ କରିଥାନ୍ତି ତାଙ୍କର ଗୃହିଣୀ। ଗାଈମାନଙ୍କର ସେବା, ଯତ୍ନ, ଖାଦ୍ୟ

ଯୋଗାଣ ସହ ଦୁଗ୍ଧ ଦୁହିଁବା କାର୍ଯ୍ୟରେ ସେ ସାହାଯ୍ୟ କରିଥାନ୍ତି । ନିଜ ଗ୍ରାମରେ ତିନିଜଣ ବେକାର ଗରିବ ଯୁବକଙ୍କୁ ଗୋ ପାଳନ ପାଇଁ ମୂଲିଆ ଭାବରେ ରଖି ସେମାନଙ୍କ ପାଉଣା ଦେବା ସହ ସେମାନଙ୍କୁ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ମାଈ ବାଛୁରୀ ଅଳ୍ପ ମୂଲ୍ୟରେ ଯୋଗାଇ । ଆତ୍ମନିର୍ଭରଶୀଳ ହେବା ଏବଂ ସମାଜରେ ଉନ୍ନତ ଜୀବନ ସହ ପ୍ରତିଷ୍ଠିତ ହେବାରେ ଗୋପାଳନ ଏକ ଉପଯୁକ୍ତ ପନ୍ଥା ବୋଲି ସେ କହନ୍ତି ।

ଗ୍ରାମରେ ଅନୁଷ୍ଠିତ ହୋଇଥିବା ଜିଲ୍ଲା ସ୍ତରୀୟ ଗୋ–ସମ୍ବର୍ଦ୍ଧନା ଉତ୍ସବରେ ତାଙ୍କର ଗାଈ ଶ୍ରେଷ୍ଠ ପୁରସ୍କାର ପାଇଥିବାରୁ ମୁଖ୍ୟ ଅତିଥି ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଭୂପିନ୍ଦର ସିଂହ ତାଙ୍କୁ ସମ୍ବର୍ଦ୍ଧନା କରିବା ସହ ପୁରସ୍କାର ଓ ପ୍ରମାଣପତ୍ର ଏବଂ ଷ୍ଟେଟ ବ୍ୟାଙ୍କ୍ ତରଫରୁ ଏକ ଟ୍ରଫି ପ୍ରଦାନ କରିଥିଲେ ।

---

**ଶ୍ରୀ ଈଶ୍ୱର ପ୍ରସାଦ ସିଂହ,**
**ଜିଲ୍ଲା ଲୋକ ସମ୍ପର୍କ ଅଧିକାରୀ, କଳାହାଣ୍ଡି**

## ପ୍ରଦୀପର ଦୁଃଖ ଘୁଞ୍ଚିଲା

ଗାଁର ନାମ କରଞ୍ଜିଆ । ସେଇ ଗାଁରେ ପ୍ରଦୀପର ଘର । ବାପାଙ୍କ ମୃତ୍ୟୁପରେ ଘରର ଦାୟିତ୍ୱ ତା'ଉପରେ । ଅଳ୍ପ ଜମିବାଡି ଥାଏ । ସେଇଥିରୁ ଯାହା ଆୟ ହୁଏ, ୧୦ ଜଣିଆ ପରିବାର ଚଳାଇବା ବଡ଼ କଷ୍ଟ ହୋଇଥାଏ । ମନେ ମନେ ପ୍ରଦୀପ ଚିନ୍ତା କରୁଥାଏ କିଛି ଗୋଟିଏ ବ୍ୟବସାୟ କରିବାପାଇଁ । ମାତ୍ର ସେଥିକୁ ପୁଞ୍ଜି ଲୋଡ଼ା ।

ଦିନେ ତାଙ୍କ ଗାଁରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ଚଳଚ୍ଚିତ୍ର ହଉଥାଏ । ଆଉ ସରକାର ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା ମାଧ୍ୟମରେ କେମିତି ଶିକ୍ଷିତ ବେକାର ଯୁବକମାନଙ୍କୁ ଋଣ ଦେଇ ଛୋଟ୍ ଛୋଟ ଶିଳ୍ପ ମାଧ୍ୟମରେ ଅର୍ଥଦାନର ବ୍ୟବସ୍ଥା କରୁଛନ୍ତି, ପ୍ରଦୀପ ଦେଖିବାକୁ ପାଇଲା । ସେ ମନସ୍ଥ କଲା, ସେ ମଧ୍ୟ ଋଣ ପାଇଁ ଆବେଦନ କରିବ । ବୁଝାବୁଝି କରି ସେ ଜିଲ୍ଲା ଶିଳ୍ପ କେନ୍ଦ୍ରକୁ ସାଇକେଲ ଷ୍ଟୋର ଗୋଟିଏ ଖୋଲିବା ନିମିତ୍ତ ଋଣ ପାଇଁ ଆବେଦନ କଲା । ଭାଗ୍ୟକୁ ତା'ର ଦରଖାସ୍ତ ମଞ୍ଜୁର ହେଲା । ୯୪–୯୫ ଆର୍ଥିକ ବର୍ଷରେ ତାକୁ ମିଳିଲା ୧ ଲକ୍ଷ ଟଙ୍କାର ଋଣ ଚମ୍ପୁଆର ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଜରିଆରେ । ମାର୍ଜିନ୍ ଟଙ୍କା ବ୍ୟାଙ୍କ୍‌ରେ ଜମା ଦେବା ପରେ ସେ ପାଇଲା ୯୫,୦୦୦ ଟଙ୍କା ।

ସେଥିରେ ସେ କରଞ୍ଜିଆ ଗାଁ ଛକ ଉପରେ ସାଇକେଲ ଦୋକାନଟିଏ କରିଛି । ୨ ଜଣ ମିସ୍ତ୍ରୀ କାମ କରୁଛନ୍ତି । ତା'ର ମାସିକ ଆୟ ହେଉଛି ହାରାହାରି ୫,୦୦୦ ଟଙ୍କା । ଏପର୍ଯ୍ୟନ୍ତ ସେ ୨୫,୦୦୦ ଟଙ୍କା ସୁଝି ସାରିଲାଣି । ଚମ୍ପୁଆରୁ ଉଲାଗାଡ଼ାରେ ଗଲେ କରଞ୍ଜିଆ ଗାଁ ଛକରେ ପଡ଼ିବ ପ୍ରଦୀପର ତାରିଣୀ ସାଇକେଲ ଷ୍ଟୋର । ବର୍ତ୍ତମାନ ସେ ତା'ର ଦୋକାନଟିକୁ ବଢ଼ାଇବା ପାଇଁ ଚେଷ୍ଟା କରୁଛି ।

ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା ଲୋକଙ୍କ ଆର୍ଥିକ ମାନଦଣ୍ଡକୁ ଉନ୍ନତ କରିବା ସହିତ ଗ୍ରାମ୍ୟ ଶିଳ୍ପର ବିକାଶରେ ସାହାଯ୍ୟ କରିଛି ।

---

**କଲ୍ୟାଣୀ ଦାସ,**
**ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,**
**କେନ୍ଦୁଝର**

## ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାର ସଫଳ ରୂପାୟନ : ଭୋଗବାଟି ଗ୍ରାମ

ବଣ ପାହାଡ଼ ଘେରା, ଶାନ୍ତସରଳ ପରିବେଶ ପରିବେଷ୍ଟିତ ମୟୂରଭଞ୍ଜ ଜିଲ୍ଲା ସାଧାରଣତଃ ଆଦିବାସୀ ଜିଲ୍ଲା ଭାବରେ ପରିଚିତ । ଆଦିବାସୀ ବହୁଳ ଏହି ଜିଲ୍ଲାର ସଦର ମହକୁମା ଅନ୍ତର୍ଗତ ବେତନଟୀ ବ୍ଲକ୍‌ର ଭୋଗବାଟି ଗ୍ରାମ । ଭୋଗବାଟି ଗ୍ରାମର ବାସିନ୍ଦା ମୁଖ୍ୟତଃ ଭୂମିଜ ଓ ତନ୍ତୀ । ପାଟିଘେରା ଅସ୍ୱାସ୍ଥ୍ୟକର ପରିବେଶରେ ରହୁଥିବା ଏହି ଗ୍ରାମବାସୀମାନେ ଘୋର ଅଭାବ ଅସୁବିଧା ମଧ୍ୟରେ ଜୀବନ ଅତିବାହିତ କରୁଥିଲେ ୧୦ ବର୍ଷ ପୂର୍ବେ । କିନ୍ତୁ କେତେକ ସ୍ୱେଚ୍ଛାସେବୀଙ୍କ ପ୍ରରୋଚନାରେ ଓ ଉଦ୍ୟମ ଯୋଗେ ଏହି ଗ୍ରାମର ଚିତ୍ର ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବେ ବଦଳିଯାଇଛି । ଏବେ ଏହା ଏକ ଆତ୍ମନିର୍ଭରଶୀଳ, ଶିକ୍ଷିତ ଗ୍ରାମରେ ପରିଣତ ହୋଇ ପାରିଛି ।

ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାରୁ ଋଣ ନେଇ ବେତନଟୀର କେତେକ ଲୋକ ବିଜ୍ଞାନ ଓ କାରିଗରୀ କୌଶଳ ବିଭାଗର ଶାଖା କାର୍ଯ୍ୟାଳୟ ଓରେଡ଼ାରେ ଖଲିପତ୍ର ଦୋନା ଓ ଖଲି ତିଆରି କରୁଥିଲେ । ଏହି ଗ୍ରାମର ଲୋକମାନେ ଦିନ ମଜୁରିଆ ଭାବେ ସେଠାରେ କାର୍ଯ୍ୟ କରି କିଛିଟା ଗୁଜୁରାଣ ମେଣ୍ଟାଉ ଥାଉଥିଲେ ।

ସେହି ଗ୍ରାମର ବାସିନ୍ଦା ଶ୍ରୀ ପ୍ରସନ୍ନ କୁମାର ଦାସ, ବିଜ୍ଞାନ ଓ କାରିଗରୀ କୌଶଳ ବିଭାଗ ମନ୍ତ୍ରୀ ହେଲେ । ତାଙ୍କର ସହାନୁଭୂତି ଓ ସାହାଯ୍ୟ ଏହି ଗ୍ରାମକୁ ଆଜି ଆତ୍ମନିର୍ଭରଶୀଳ କରି ଗଢ଼ି ପାରିଛି । ଗ୍ରାମବାସୀମାନଙ୍କର ଆତ୍ମଶକ୍ତି, ଦୃଢ଼ ମନୋବଳ, ପରିଶ୍ରମ ସେମାନଙ୍କୁ ସମାଜରେ ସୁଦକ୍ଷ ନାଗରିକ ରୂପେ ଗଢ଼ି ତୋଳିଛି । ପ୍ରଥମେ ଏହି ଗ୍ରାମବାସୀମାନେ ମିଳିତ ଭାବେ ଖଲିଦୋନା ତିଆରି କରିବା ମେସିନ୍ ଓରେଡ଼ାରୁ ଋଣ ସୂତ୍ରରେ ପି.ଏମ୍.ଆଇ. ଯୋଜନା ଦ୍ୱାରା ନେଇ ନିଜଗ୍ରାମରେ କାର୍ଯ୍ୟ ଆରମ୍ଭ କରିଥିଲେ । ଗ୍ରାମର ବୃଦ୍ଧ, ବାଳକ, ବାଳିକା, ସ୍ତ୍ରୀ, ପୁରୁଷ ସମସ୍ତଙ୍କ ସହଯୋଗ ଓ କଠିନ ପରିଶ୍ରମର ଫଳ ସ୍ୱରୂପ ବର୍ତ୍ତମାନ ଏହି ଗ୍ରାମବାସୀମାନେ ପ୍ରତ୍ୟେକ ଘରେ ଘରେ ଉକ୍ତ ମେସିନ୍ ବସାଇ ଖଲିଦୋନା ପ୍ରସ୍ତୁତ କରି ତାହାକୁ ବାହାର ଜିଲ୍ଲା ଓ ବାହାର ରାଜ୍ୟକୁ ରପ୍ତାନି କରିବାକୁ ସକ୍ଷମ ହୋଇ ପାରିଛନ୍ତି ।

ଭୋଗବାଟୀ ଗ୍ରାମରେ ଆଉ କୁଳଘର ନାହିଁ କିମ୍ବା ନାହିଁ ଘା ଅନ୍ନର କରୁଣ ଚିତ୍କାର । ନାହାନ୍ତି ଅଶିକ୍ଷିତ । ପ୍ରାୟ ସମସ୍ତେ

ସଚେତନ ସେମାନଙ୍କର ପରିବେଶ ଓ ସ୍ୱାସ୍ଥ୍ୟ ସଂରକ୍ଷଣ ନିମନ୍ତେ । ସବୁଠୁ ଅଧିକ ଆନନ୍ଦଦାୟକ ଘଟଣା ହେଲା, ଛୋଟ ଏକ ଗାଁ ଆଜି ମୟୂରଭଞ୍ଜ ଜିଲ୍ଲାର ପୂର୍ବ ଐତିହ୍ୟ, ସଂସ୍କୃତି, ସମ୍ମାନକୁ ଫେରାଇ ଆଣି ପାରିଛି । ମୟୂରଭଞ୍ଜ ଜିଲ୍ଲା ଆଦିବାସୀବହୁଳ ହୋଇ ମଧ୍ୟ ଛଉନୃତ୍ୟ ପାଇଁ ପୃଥିବୀ ପ୍ରସିଦ୍ଧ ଥିଲା । ଶାଢୀ ରପ୍ତାନିରେ ମଧ୍ୟ ବିଦେଶରେ ନାମ ରଖିଥିଲା । ବନ୍ୟଜନ୍ତୁ ସଂରକ୍ଷଣ କ୍ଷେତ୍ରରେ ମଧ୍ୟ "ରାଜକୁମାରୀ ଖଇରୀ" ବାଘ ପାଇଁ ବିଦେଶରେ ଖ୍ୟାତି ଲାଭ କରିଥିଲା । ଆଜି ଖେଳିଦୋନା ରପ୍ତାନି କ୍ଷେତ୍ରରେ ମଧ୍ୟ ସେହି ମୟୂରଭଞ୍ଜ ଜିଲ୍ଲାର ନାମ ରଖିପାରିଛି । ଅଖ୍ୟାତ ଭୋଗବାଟି ଗ୍ରାମ । ଏ ଗାଁର ଲୋକମାନେ ନିଜର କର୍ମମୟ ଜୀବନରେ ତାଙ୍କର ଆରାଧ୍ୟା ଦେବୀ ଜାହିରା ଠାକୁରାଣୀଙ୍କୁ ଭୁଲି ନାହାନ୍ତି । ପ୍ରତ୍ୟେକ ସଂକ୍ରାନ୍ତିରେ ସେମାନେ ଦେହୁରୀ ଦ୍ୱାରା ପୂଜା ଅର୍ଚ୍ଚନା କରିଥାନ୍ତି ।

ଗ୍ରାମବାସୀମାନେ ତାଙ୍କର ପାରମ୍ପରିକ କୁକୁଡ଼ା ଲଢେଇକୁ ମଧ୍ୟ ଭୁଲି ନାହାନ୍ତି । ପ୍ରୌଢ଼ଶିକ୍ଷା ପାଇଁ ଗ୍ରାମରେ ଗୋଟିଏ ଗୃହ ନିର୍ମାଣ କରାଯାଇଛି ।

ପି.ଏମ୍.ଆର୍. ଯୋଜନାର ସଫଳତା ଭୋଗବାଟି ଗ୍ରାମର ସମୃଦ୍ଧିରୁ ପରିସ୍ଫୁଟ ହୋଇଥାଏ ।

---

ସୁମତୀ ବେହେରା,
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା, ଭୁବନେଶ୍ୱର

## ଆସନ୍ତା ବର୍ଷ ମାର୍ଚ୍ଚ ସୁଦ୍ଧା ରାଜ୍ୟର ସମସ୍ତ ଗ୍ରାମର ବିଦ୍ୟୁତ୍‌କରଣ ପାଇଁ ସରକାରଙ୍କ ନିଷ୍ପତ୍ତି

ଆଗାମୀ ବର୍ଷ ମାର୍ଚ୍ଚ ମାସ ଭିତରେ ଓଡ଼ିଶାର ସମସ୍ତ ଗ୍ରାମର ବିଦ୍ୟୁତ୍‌କରଣ କାର୍ଯ୍ୟ ଶେଷ ହେବ ବୋଲି ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି । ସଚିବାଳୟଠାରେ ଗ୍ରାମ୍ୟ ବିଦ୍ୟୁତ୍‌କରଣ କର୍ପୋରେସନ୍‌ର ଅଧ୍ୟକ୍ଷ ଶ୍ରୀ ଦିବାକର ଦେବଙ୍କ ସହ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଏ ସଂପର୍କରେ ଆଲୋଚନା ହୋଇ ଏହି ନିଷ୍ପତ୍ତି ନିଆଯାଇଛି ।

ଚଳିତ ବର୍ଷ ଜୁନ୍ ମାସ ଶେଷ ଭିତରେ ରାଜ୍ୟର ୬୦୦୦ ଗ୍ରାମକୁ ବିଦ୍ୟୁତ୍ ଯୋଗାଇ ଦିଆଯିବା ପାଇଁ ସ୍ଥିର କରାଯାଇଛି । ଏଥିପାଇଁ ଜିଲ୍ଲାୱାରୀ ଗ୍ରାମମାନଙ୍କର ତାଲିକା ପ୍ରସ୍ତୁତ ହୋଇସାରିଛି । ୨୦୦୦ ମସିହା ମାର୍ଚ୍ଚ ଭିତରେ ଅବଶିଷ୍ଟ ୩୦୦୦ ଗ୍ରାମର ବିଦ୍ୟୁତ୍‌କରଣ ପ୍ରକ୍ରିୟା ସାରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହା ଫଳରେ ୨୦୦୦ ମସିହା ମାର୍ଚ୍ଚ ପରେ ଓଡ଼ିଶାରେ ବିଦ୍ୟୁତ୍‌କରଣ ହୋଇ ନଥିବା କୌଣସି ଗ୍ରାମ ରହିବ ନାହିଁ ଏବଂ ଓଡ଼ିଶା ସାରା ଦେଶରେ ଏ କ୍ଷେତ୍ରରେ ଅନ୍ୟତମ ଆଗୁଆ ରାଜ୍ୟ ରୂପେ ବିବେଚିତ ହେବ । ଏଥିପାଇଁ ଆବଶ୍ୟକୀୟ ଅର୍ଥ ଯୋଗାଇ ଦେବା ପାଇଁ ଗ୍ରାମ୍ୟ ବିଦ୍ୟୁତ୍‌କରଣ କର୍ପୋରେସନ୍‌ର ଅଧ୍ୟକ୍ଷ ସମ୍ମତ ହୋଇଛନ୍ତି ।

ଆଲୋଚନା ସମୟରେ ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ସଂପୃକ୍ତ ବିଭାଗୀୟ ଉଚ୍ଚ ପଦାଧିକାରୀମାନେ ଉପସ୍ଥିତ ଥିଲେ ।

## ଗ୍ରାମାଞ୍ଚଳ ଗୃହନିର୍ମାଣ କାର୍ଯ୍ୟକ୍ରମ ଜରିଆରେ ସମସ୍ତଙ୍କ ପାଇଁ ବାସଗୃହର ବ୍ୟବସ୍ଥା

ଆଗାମୀ ୨୦୦୧ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ଆଶ୍ରୟସ୍ଥଳ ଯୋଗାଇ ଦେବା ଜାତୀୟ ଗୃହ ନିର୍ମାଣ ନୀତିରେ ଅନ୍ତର୍ଭୁକ୍ତ ହୋଇଛି । ଏହି ଲକ୍ଷ୍ୟ ପୂରଣ ଉଦ୍ଦେଶ୍ୟରେ ରାଜ୍ୟ ସରକାର ଓଡ଼ିଶା ଗ୍ରାମ୍ୟ ଗୃହ ନିର୍ମାଣ ଓ ଉନ୍ନୟନ ନିଗମ, ଓଡ଼ିଶା ରାଜ୍ୟ ସମବାୟ ଗୃହ ନିର୍ମାଣ ନିଗମ ବିଭିନ୍ନ ଉନ୍ନୟନ କର୍ତ୍ତୃପକ୍ଷ, ଆଞ୍ଚଳିକ ଉନ୍ନୟନ ଟ୍ରଷ୍ଟ ଓ ସ୍ୱତନ୍ତ୍ର ଯୋଜନା କର୍ତ୍ତୃପକ୍ଷ ଭଳି ଗୃହ ନିର୍ମାଣ ସଂସ୍ଥାଗୁଡ଼ିକ ଜରିଆରେ ବ୍ୟାପକ ଗ୍ରାମାଞ୍ଚଳ ଗୃହ ନିର୍ମାଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଉଛନ୍ତି । ଏଥିପାଇଁ ଗତ ଆର୍ଥିକ ବର୍ଷରେ ୧୪.୫୦ କୋଟି ଟଙ୍କା ଯୋଗାଇ ଦିଆଯାଇଛି ଓ ଆର୍ଥିକ-ଦୁର୍ବଳଶ୍ରେଣୀ ନିମ୍ନ ଆୟକାରୀଙ୍କ ନିମନ୍ତେ ୧୦ ହଜାର ବାସଗୃହ ନିର୍ମାଣ କରିବାର ଲକ୍ଷ୍ୟ ରଖାଯାଇଛି ।

ଏହା ବ୍ୟତୀତ ଅତି ଗରିବ ଶ୍ରେଣୀର ଲୋକ ତଥା ବସ୍ତିବାସିନ୍ଦାଙ୍କ ବାସଗୃହ ଆବଶ୍ୟକତା ପୂରଣ ଦିଗରେ ଓଡ଼ିଶା ରାଜ୍ୟ ଗୃହ ନିର୍ମାଣ ବୋର୍ଡ ଓ ଅନ୍ୟାନ୍ୟ ଗୃହନିର୍ମାଣ ସଂସ୍ଥାମାନ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି ।

ସେହିଭଳି ସମନ୍ୱିତ ଗୃହନିର୍ମାଣ ପରିକଳ୍ପନା ଅନୁଯାୟୀ ଅଗ୍ନି ନିରୋଧକ ଛାତଘର ପାଇଁ ୧୦ ହଜାର ଭୂମିହୀନ ଶ୍ରମିକଙ୍କୁ ନିର୍ମାଣ ସହାୟତା ବାବଦରେ ପ୍ରତିବର୍ଷ ୩୦୦.୦୦ ଲକ୍ଷ ଟଙ୍କା ଯୋଗାଇ ଦିଆଯାଉଛି । ନିମ୍ନ ଆୟକାରୀ/ମଧ୍ୟମ ଆୟକାରୀ ବର୍ଗର ବାସଗୃହ ପରିକଳ୍ପନା ବାବଦରେ ଜିଲ୍ଲାମାନଙ୍କ ଜରିଆରେ ୧୫୦.୦୦ ଲକ୍ଷ ଟଙ୍କାର ଋଣ ସହାୟତା ଯୋଗାଇ ଦିଆଯାଇସାରିଲାଣି ।

# ଗଣମାଧ୍ୟମର ମୂଲ୍ୟବୋଧ ଓ ନିରପେକ୍ଷ ସମ୍ବାଦ ପରିବେଷଣ

ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ରୂପେ ସମ୍ବାଦପତ୍ରଗୁଡ଼ିକ ପରିଗଣିତ । ସମ୍ବାଦପତ୍ର ରାଷ୍ଟ୍ରର ଜାଗ୍ରତ ପ୍ରହରୀ ସ୍ୱରୂପ ତଥା ଆହରଣ, ଅନୁଶୀଳନ ଓ ପରିପ୍ରସାରର ମୁଖ୍ୟ ଦାୟିତ୍ୱ ସମ୍ବାଦପତ୍ରମାନଙ୍କ ଉପରେ ନିର୍ଭର କରେ । ଭାରତ ସ୍ୱାଧୀନ ହେବା ପୂର୍ବରୁ ବ୍ରିଟିଶ୍ ଶାସକମାନେ ଜାତୀୟ ଜାଗରଣର ସମ୍ବାଦ, ଲୁଣ୍ଠନ ଓ ଶୋଷଣର ସମ୍ବାଦକୁ ପ୍ରକାଶ କରିବାକୁ ଚାହୁଁନଥିଲେ । ସେ ସମୟରେ ମଧ୍ୟ ସମ୍ବାଦ ପରିବେଷଣ କ୍ଷେତ୍ରରେ କୌଣସି ଜାତୀୟ ନୀତି ନଥିଲା । ଭାରତ ସ୍ୱାଧୀନ ହେବା ପରେ ସମ୍ବିଧାନର ୧୯ ଧାରା (୧) (କ)ରେ ଅଭିବ୍ୟକ୍ତି ପ୍ରକାଶ କରିବାର ଅଧିକାର ଉଲ୍ଲେଖ କରାଗଲା । ଏହାଦ୍ୱାରା ବାକ୍ ସ୍ୱାଧୀନତାକୁ ଜାତୀୟ ଅଧିକାର ଭାବେ ଗ୍ରହଣ କରାଗଲା ଓ ତାହା ଫଳରେ ଦୀର୍ଘଦିନ ଧରି ଅସ୍ୱସ୍ତିକର ପରିସ୍ଥିତିରେ ରହିଥିବା ସମ୍ବାଦପତ୍ରମାନେ କ୍ରମଶଃ ସ୍ୱାଧୀନ ମତ ପୋଷଣ କରିବାକୁ ଲାଗିଲେ ।

ଅଧୁନା ନିରପେକ୍ଷ ସମ୍ବାଦ ପରିବେଷଣରେ ଯେଉଁ ପ୍ରକାର ପ୍ରତିବନ୍ଧକ ସୃଷ୍ଟି ହେଉଛି, ତାହା ପରିହାର କରାଯାଇ ନିରପେକ୍ଷ ସତ୍ୟ ସମ୍ବାଦ ପରିବେଷଣ କରାଯିବା ଆବଶ୍ୟକ । ଏଥିରେ ଦେଶର ତତ୍କାଳୀନ ସାମାଜିକ, ରାଜନୈତିକ ତଥା ଅର୍ଥନୈତିକ ଘଟଣାବଳୀକୁ ନେଇ ଜନସାଧାରଣଙ୍କ ହିତସାଧନ ନିମନ୍ତେ ତଥ୍ୟ ପରିବେଷଣ କରିବା ଏକାନ୍ତ ବାଞ୍ଛନୀୟ । ସମ୍ବାଦପତ୍ରଗୁଡ଼ିକ ଦେଶ, ଜାତି ଓ ଜନମତର ଏପରି ଏକ ବୃହତ ମାଧ୍ୟମ, ଯେଉଁଥିରେ କି ଜନ ସଚେତନତା ସୃଷ୍ଟି ହୋଇଥାଏ ଏବଂ ଦେଶର ସାମ୍ପ୍ରତିକ, ସାମାଜିକ, ରାଜନୈତିକ, ଅର୍ଥନୈତିକ ଘଟଣାବଳୀଗୁଡ଼ିକ ପ୍ରତିଫଳିତ ହୋଇଥାଏ ।

ବର୍ତ୍ତମାନ ଦେଶରେ ସତରିହଜାର ଛୋଟ ବଡ଼ ଦୈନିକ ସମ୍ବାଦପତ୍ର ପ୍ରକାଶ ପାଉଥିବା ସ୍ଥଳେ ଆମ ରାଜ୍ୟରେ ୪୦ଟି ସମ୍ବାଦପତ୍ର ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଅନୁମୋଦିତ ହୋଇଛି । ତନ୍ମଧ୍ୟରୁ ୬ଟି ବୃହତ ସମ୍ବାଦପତ୍ର ଯଥା—(୧) ସମାଜ, (୨) ପ୍ରଜାତନ୍ତ୍ର, (୩) ସମ୍ବାଦ, (୪) ଧରିତ୍ରୀ, (୫) ପ୍ରଗତିବାଦୀ (୬) ମାତୃଭାଷା ଏବଂ ଅବଶିଷ୍ଟ ୩୪ଟି କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ଯଥା— (୧) ବର୍ତ୍ତମାନ ସମାଚାର, (୨) ଉତ୍କଳ ମେଲ, (୩) ପ୍ରସାଦ କେଶରୀ, (୪) Press News of India, (୫) କଳିଙ୍ଗ ମେଲ, (୬) Orissa Times, (୭) Sun Times, (୮) ରାଷ୍ଟ୍ରଦୂତ, (୯) ଦୈନିକ ଆଶା, (୧୦) ଅଗ୍ନିଶିଖା, (୧୧) ନୂତନ ବାର୍ତ୍ତା, (୧୨) ସ୍ୱରାଜ୍ୟ, (୧୩) ଆଜିକାଲି, (୧୪) କୋଇଲ, (୧୫) ଧ୍ୱନି ପ୍ରତିଧ୍ୱନି, (୧୬) ଖୋଲାଦ୍ୱାର, (୧୭) ଉତ୍କଳ ସମାଜ (୧୮) ଜନପଥ, (୧୯) ନ୍ୟାୟବତୀ, (୨୦) ଅନେକ ସୂଚନା, (୨୧) ମୁକ୍ତ ମଣ୍ଡପ, (୨୨) ଲୋକ କଥା, (୨୩) ଭାରତ ଦର୍ଶନ, (୨୪) କଳିଙ୍ଗ ଭାରତୀ, (୨୫) The Eswar, (୨୬) ଅନୁପମ ଭାରତ, (୨୭) ସମ୍ବାଦକଳିକା, (୨୮) ସମୟ, (୨୯) ତ୍ରିଶକ୍ତି, (୩୦) ଡାକରା, (୩୧) ସକାଳ, (୩୨) ଉତ୍କଳମେଲ, (ଭୁବନେଶ୍ୱର) (୩୩) ଉତ୍କଳିକା, (୩୪) ସ୍ୱୀକାର ପ୍ରକାଶ ପାଉଅଛି । ଏତଦ୍‌ବ୍ୟତୀତ ଅନେକଗୁଡ଼ିଏ ସାପ୍ତାହିକ ତଥା ପାକ୍ଷିକ ସମ୍ବାଦପତ୍ର ମଧ୍ୟ ପ୍ରକାଶ ପାଉଅଛି ।

ଏସମସ୍ତ ସମ୍ବାଦପତ୍ର ପ୍ରକାଶନ କ୍ଷେତ୍ରରେ କେତେକ ନୀତିନିୟମ ମଧ୍ୟ ପ୍ରଣୟନ କରାଯାଇଛି । ଏଥିନିମନ୍ତେ ସାମ୍ବାଦିକମାନଙ୍କର କେତେକ ମୌଳିକ ଅଧିକାର ସମ୍ପର୍କରେ ମଧ୍ୟ ଉଲ୍ଲେଖ କରାଯାଇଛି । ସମ୍ବାଦ ପ୍ରକାଶନ ସମୟରେ ସମ୍ବାଦ ଯେପରି ସତ୍ୟ ତଥା ନିରପେକ୍ଷ ହୁଏ ସେଥିପ୍ରତି ଉପଯୁକ୍ତ ଧ୍ୟାନ ଦିଆଯିବା ଆବଶ୍ୟକ । ମିଥ୍ୟା ସମ୍ବାଦ ପରିବେଷଣ କାମଳ ସାମ୍ବାଦିକତାର ପରିଚାୟକ । ଏଥିନିମନ୍ତେ ଆଇନସମ୍ମତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ପାରିବ । ଏହାକୁ ଦୃଷ୍ଟିରେ ରଖି ପ୍ରେସ୍ କାଉନ୍ସିଲ ଗଠନ କରାଯାଇଛି ।

ତଥ୍ୟ ଜାଣିବାର ଅଧିକାର ପାଇଁ ବର୍ତ୍ତମାନ ସମଗ୍ର ପୃଥିବୀରେ ଆନ୍ଦୋଳନ ମୁଣ୍ଡଟେକି ଉଠିଛି । ସରକାରଙ୍କ କାର୍ଯ୍ୟାବଳୀ ସମ୍ପର୍କରେ ସମସ୍ତ ତଥ୍ୟ ଜାଣିବା ପାଇଁ ଜନତା ଉଦ୍‌ଗ୍ରୀବ । ସେହିପରି ଘରୋଇ କ୍ଷେତ୍ରରେ ଥିବା ସମସ୍ତ ଅନୁଷ୍ଠାନ, ଉଦ୍ୟୋଗ ଓ ପ୍ରକଳ୍ପ ସମ୍ବନ୍ଧରେ ଆବଶ୍ୟକୀୟ ତଥ୍ୟ ଜାଣିବାର ଅଧିକାର ନାଗରିକମାନଙ୍କର ଅଛି । ଏହି ଅଧିକାର ଅର୍ଥ ସ୍ୱେଚ୍ଛାଚାରିତା ନୁହେଁ । ଆଜିକାଲି ବିଭିନ୍ନ ସମ୍ବାଦପତ୍ରରେ ଚରିତ୍ରସଂହାର ମୁଖ୍ୟ କଥାବସ୍ତୁ ଭାବରେ ଦେଖା ଯାଉଛି । ଏଥିରୁ ମନେହୁଏ ସତେ ଯେପରି ଅନ୍ୟାନ୍ୟ କଥାବସ୍ତୁ ଗୌଣ । ସମ୍ବାଦପତ୍ରମାନେ ମୋଟାମୋଟି ଭାବରେ ନିଷ୍ଠାର ସହ ନିର୍ଭୀକ ସମ୍ବାଦ ପରିବେଷଣ କରିବା ଉଚିତ ।

ରାଷ୍ଟ୍ରର ମଙ୍ଗଳ ତଥା ସମସ୍ତ ଜନକଲ୍ୟାଣ କାର୍ଯ୍ୟକ୍ରମ ଓ ଜନସାଧାରଣଙ୍କର ଉନ୍ନତିକଳ୍ପେ ସାମ୍ବାଦିକମାନେ ଯତ୍ନଶୀଳ ହେବା ଆବଶ୍ୟକ । ସମ୍ବାଦପତ୍ରମାନେ ଅଧିକ ବାସ୍ତବମୁଖୀ, ନିର୍ଭୀକ ହୋଇ ଜନସ୍ୱାର୍ଥ ସମ୍ବଳିତ ଓ ତଥ୍ୟନିଷ୍ଠ ସମ୍ବାଦ ପରିବେଷଣରେ ଅଧିକ ବ୍ରତୀ ହୁଅନ୍ତୁ । କାମଳ ତଥା କପୋଳକଳ୍ପିତ ସମ୍ବାଦ ପରିବେଷଣ ଯେତେ ରୋଚକ ହେଲେ ମଧ୍ୟ ତାହା ଦେଶର ସମୃଦ୍ଧ ସ୍ୱାର୍ଥ ଦୃଷ୍ଟିରୁ ସର୍ବଦା ପରିହାର କରିବା ଉଚିତ ।

ସହ ସୂଚନା ଅଧିକାରୀ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ ଭୁବନେଶ୍ୱର

# ସମ୍ବାଦ ପରିକ୍ରମା

## କୃଷି ଉତ୍ପାଦନ ବୃଦ୍ଧି ନିମନ୍ତେ ଆପିକଲ ମାଧ୍ୟମରେ ବ୍ୟାପକ ପ୍ରୋତ୍ସାହନ ଦିଆଯାଉଛି

ରାଜ୍ୟରେ କୃଷି ଉତ୍ପାଦନ ବୃଦ୍ଧି କରି ଓଡ଼ିଶାକୁ ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରିବା ନିମନ୍ତେ ଆପିକଲ ପକ୍ଷରୁ ବ୍ୟାପକ ପ୍ରୋତ୍ସାହନ ଦିଆଯାଉଛି ବୋଲି ଆପିକଲର ଅଧ୍ୟକ୍ଷ ଡଃ ଯୋଗେଶ ଚନ୍ଦ୍ର ରାଉତ କହିଛନ୍ତି । ସଂପ୍ରତି ଅନୁଗୁଳ ସର୍କିଟ୍ ହାଉସ୍‌ଠାରେ ଅନୁଷ୍ଠିତ ଏକ ବୈଠକରେ ଉଦ୍‌ବୋଧନ ଦେଇ ଡଃ ରାଉତ କହିଲେ ଯେ ଆମ ରାଜ୍ୟର କୃଷି ଉତ୍ପାଦିକା ଶକ୍ତି ବୃଦ୍ଧି ମୁଖ୍ୟତଃ ଜଳସେଚନ ଉପରେ ନିର୍ଭର କରୁଅଛି । ଜଳସେଚନ ପ୍ରକଳ୍ପ ବ୍ୟୟ ବହୁଳ ନଦୀ, ନାଳ ଏବଂ ଝରଣାରେ ବୋହି ଯାଉଥିବା ବର୍ଷା ଜଳକୁ ବନ୍ଧ ମାଧ୍ୟମରେ ସଂଚୟ କରି ବିଭିନ୍ନ କୃଷି କାର୍ଯ୍ୟରେ ବିନିଯୋଗ କରାଯିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ସେ କହିଲେ ଯେ ଆମ ରାଜ୍ୟରେ ତଦ୍ୟାବଧି ୩୫ ପ୍ରତିଶତ ଜମିରେ ଜଳସେଚନର ସୁବିଧା ଦିଆଯାଉଛି । ଆପିକଲ ପକ୍ଷରୁ ଚାଷୀ ତଥା କୃଷି ଉପଯୋଗୀମାନଙ୍କୁ ଦିଆଯାଉଥିବା ବିଭିନ୍ନ ପ୍ରୋତ୍ସାହନ ସଂପର୍କରେ ସୂଚନା ଦେଇ ଡଃ ରାଉତ କହିଲେ ଯେ କୃଷି ଓ ଉଦ୍ୟୋଗୀମାନେ ନିଜ ଚେଷ୍ଟାରେ ବନ୍ଧ, ବାଡ, କୂପ ମାଧ୍ୟମରେ ଜଳସେଚନର ସୁବିଧା ସୃଷ୍ଟି କଲେ ସେମାନଙ୍କୁ ଆପିକଲ ପକ୍ଷରୁ ୫୦ ପ୍ରତିଶତ ରିହାତି ଦିଆଯିବ । ଏତଦ୍ ବ୍ୟତୀତ ଆଗ୍ରୋ ସର୍ଭିସ୍ ସେଣ୍ଟର ମାଧ୍ୟମରେ ଟ୍ରାକ୍ଟର ଏବଂ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି ସବ୍‌ସିଡିରେ ଯୋଗାଇ ଦିଆଯାଉଛି । ବେସରକାରୀ ମାଧ୍ୟମରେ ବିହନ ଉତ୍ପାଦନ ପାଇଁ ମଧ୍ୟ ପ୍ରୋତ୍ସାହନ ଦିଆଯାଉଛି ବୋଲି ସେ ପ୍ରକାଶ କରିଥିଲେ । ଗୋପାଳନ, ଛେଳି ଓ କୁକୁଡା ଚାଷ, ଆଖୁ, କପା, ରବର, ସୂର୍ଯ୍ୟମୁଖୀ ଆଦି ତୈଳବୀଜ ଚାଷ ତଥା କାଜୁ, ଛତୁ, ମକା ଚାଷ ପାଇଁ ମଧ୍ୟ ଚାଷୀମାନଙ୍କୁ ୨୦ ପ୍ରତିଶତ ରିହାତିରେ ଋଣ ଯୋଗାଇ ଦିଆଯାଉଛି ବୋଲି ଡଃ ରାଉତ କହିଥିଲେ । କୃଷି ଉଦ୍ୟୋଗୀମାନେ ଏହିସବୁ ପ୍ରୋତ୍ସାହନର ସୁଯୋଗ ନେଇ ଆତ୍ମନିର୍ଭରଶୀଳ ହେବା ସଙ୍ଗେ ସଙ୍ଗେ ନିଯୁକ୍ତି ସୁଯୋଗକୁ ସଂପ୍ରସାରିତ କରିବା ପାଇଁ ଅଧ୍ୟକ୍ଷ ଡଃ ରାଉତ ପରାମର୍ଶ ଦେଇଥିଲେ ।

## ଚାଖି ଖୁଣ୍ଟିଆଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବ ପାଳିତ

ଚାଖି ଖୁଣ୍ଟିଆ (ଚନ୍ଦନ ହଜୁରୀ)ଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହ ଗତ ଜାନୁଆରୀ ୨୦ ତାରିଖରେ ମହା ସମାରୋହରେ ପାଳିତ ହୋଇଯାଇଛି । ସୂଚନା ଓ ଲୋକ ସମ୍ପର୍କ ବିଭାଗ ଏବଂ ଚାଖି ଖୁଣ୍ଟିଆ ସ୍ମୃତି ସମିତିର ମିଳିତ ଆନୁକୂଲ୍ୟରେ ଅନୁଷ୍ଠିତ ଏହି ଉତ୍ସବରେ ରାଜ୍ୟ ଅବକାରୀ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଚାଖି ଖୁଣ୍ଟିଆଙ୍କୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ପଥପ୍ରଦର୍ଶକ ଯୋଦ୍ଧା ଭାବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ କ୍ଷତ୍ରୀୟ ସନ୍ତାନ ପରି ଯେଉଁ ମହାନ୍ ବୀରତ୍ୱ ଓ ତ୍ୟାଗର ପରାକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି, ତା'ର ପଟାନ୍ତର ନାହିଁ ବୋଲି ପ୍ରକାଶ କରିଥିଲେ ।

ମୁଖ୍ୟବକ୍ତାଭାବେ ବିଶିଷ୍ଟ ଐତିହାସିକ ପ୍ରଫେସର ଜଗନ୍ନାଥ ପଟ୍ଟନାୟକ ଯୋଗ ଦେଇ ତାଙ୍କର ସ୍ମୃତିଚାରଣ ସହ ତାଙ୍କୁ ଏକାଧାରରେ ଜଣେ କବି, ସମାଜ ସଂସ୍କାରକ ଓ ମହାନ୍ ବିପ୍ଳବୀ ଭାବରେ ଅଭିହିତ କରିଥିଲେ । ତାଙ୍କର ଆତ୍ମବଳିଦାନ ଓ ତ୍ୟାଗକୁ ଜନ ମାନସରେ ଉଜ୍ଜୀବିତ କରି ରଖିବା ପାଇଁ ସ୍ମୃତି ସମିତିର ଉଦ୍ୟମ ସ୍ୱାଗତ— ଯୋଗ୍ୟ ବୋଲି ସେ ପ୍ରକାଶ କରିଥିଲେ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ରବୀନ୍ଦ୍ର ନାଥ ଦାଶଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ଚାଖି ଖୁଣ୍ଟିଆ ସ୍ମୃତି ସମିତିର ସଂପାଦକ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର ସ୍ୱାଗତ ଭାଷଣ ପରିପ୍ରେକ୍ଷୀରେ ପୁରୀଠାରେ ଚାଖି ଖୁଣ୍ଟିଆଙ୍କ ପ୍ରତିମୂର୍ତ୍ତି ସ୍ଥାପନ, ସଂଗ୍ରହାଳୟରେ ଗୋଟିଏ ଗ୍ୟାଲେରୀ ସ୍ଥାପନ, ବିଧାନ ସଭା ସଂସଦ କକ୍ଷରେ ପ୍ରତିମୂର୍ତ୍ତି ସ୍ଥାପନ, ଚାଖି ଖୁଣ୍ଟିଆ ମଲ୍ଲ ପ୍ରଶିକ୍ଷଣ ଓ ଅସଂପୂର୍ଣ୍ଣ ସଂକଳନର ସମାପ୍ତି ଓ ପ୍ରକାଶନ ପ୍ରଭୃତି ସଂପର୍କରେ ପଦକ୍ଷେପ ନେବା ଲାଗି ଦାବି ଉପସ୍ଥାପନ କରିଥିଲେ ।

ସ୍ମୃତି ସମିତିର ଉପ ସଭାପତି ଶ୍ରୀ ଦେବଦର ସାମନ୍ତ ସିଂହାର ଧନ୍ୟବାଦ ଅର୍ପଣ କରିଥିଲେ ।

ଏହି ଉପଲକ୍ଷେ ଆୟୋଜିତ ବକ୍ତୃତା ପ୍ରତିଯୋଗିତାର କୃତୀ ଛାତ୍ରଛାତ୍ରୀମାନଙ୍କୁ ମୁଖ୍ୟ ଅତିଥି ମନ୍ତ୍ରୀ ଶ୍ରୀ ରାଉତରାୟ ପୁରସ୍କାର ବଣ୍ଟନ କରିଥିଲେ । ଶେଷରେ ଗାୟତ୍ରୀ ଖୁଣ୍ଟିଆଙ୍କ ଦ୍ୱାରା ନୃତ୍ୟ ପରିବେଷଣ କରାଯାଇଥିଲା ।

## ଅତିରିକ୍ତ ପୁଷ୍ଟିକର ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଦ୍ୱାରା ୧୦ ଲକ୍ଷରୁ ଊର୍ଦ୍ଧ୍ୱ ହିତାଧିକାରୀ ଉପକୃତ

୬ ବର୍ଷର କମ୍ ବୟସର ଶିଶୁ, ଗର୍ଭବତୀ ସ୍ତ୍ରୀ ଓ ପ୍ରସୂତି ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ଅତିରିକ୍ତ ପୁଷ୍ଟିକର ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଦ୍ୱାରା ରାଜ୍ୟର ୧୦ ଲକ୍ଷ ୪୮ ହଜାର ୭୫୮ ଜଣ

ହିତାଧିକାରୀ ଉପକୃତ ହେଉଛନ୍ତି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ । ରାଜ୍ୟର ୧୯ ଗୋଟି ଜିଲ୍ଲା ମଧ୍ୟରୁ ଅନୁଗୁଳ ଜିଲ୍ଲାର ୫୬,୫୦୦ ଜଣ, ଢେଙ୍କାନାଳ ଜିଲ୍ଲାର ୫୮ ହଜାର, ବାଲେଶ୍ୱର ଜିଲ୍ଲାର ୬୬,୪୦୧ ଜଣ, ଭଦ୍ରକ ଜିଲ୍ଲାର ୧୬,୬୦୦ ଜଣ, ସୋନପୁର ଜିଲ୍ଲାର ୩୩ ହଜାର, ଗଂଜାମ ଜିଲ୍ଲାର ଏକ ଲକ୍ଷ ୧୬ ହଜାର, ପୁରୀ ଜିଲ୍ଲାର୪୨,୧୦୦ ଜଣ, ଖୋର୍ଦ୍ଧା ଜିଲ୍ଲାର ୩୧,୪୦୦ ଜଣ, ନୟାଗଡ ଜିଲ୍ଲାର ୨୩,୫୦୦ ଜଣ, ଝାରସୁଗୁଡା ଜିଲ୍ଲାର ୩୨ ହଜାର, ଦେବଗଡ ଜିଲ୍ଲାର ୨୦,୫୦୦ ଜଣ, ଯାଜପୁର ଜିଲ୍ଲାର ୫୬,୫୦୦ ଜଣ, କଟକ ଜିଲ୍ଲାର ୬୩,୪୨୬ ଜଣ ଓ ଜଗତସିଂହପୁର ଜିଲ୍ଲାର ୫୪,୮୬୧ ଜଣ ହିତାଧିକାରୀ ଉପକୃତ ହେଉଛନ୍ତି । ସେହିପରି କେନ୍ଦ୍ରାପଡା ଜିଲ୍ଲାର ୨୬,୫୦୦ ଜଣ, କୋରାପୁଟ ଜିଲ୍ଲାର ଏକ ଲକ୍ଷ ୪୧ ହଜାର ୩୦୦ ଜଣ, ନବରଂଗପୁର ଜିଲ୍ଲାର ଏକ ଲକ୍ଷ ୨୩ ହଜାର ୫୭୦ ଜଣ ଓ ମାଲକାନଗିରି ଜିଲ୍ଲାର ୬୪ ହଜାର ଜଣ ହିତାଧିକାରୀ ଉପକୃତ ହେଉଛନ୍ତି ।

ଏହି ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ପାଇଁ ଚଳିତ ଆର୍ଥିକ ବର୍ଷରେ ୨୮ କୋଟି ୨୯ ଲକ୍ଷ ୨୦ ହଜାର ଟଙ୍କାର ବ୍ୟୟ ବରାଦ ଥିବା ବେଳେ ଗତ ଡିସେମ୍ବର ମାସ ଶେଷ ସୁଦ୍ଧା ୧୬ କୋଟି ୪୯ ଲକ୍ଷ ୩୨ ହଜାର ଟଙ୍କା ଆବଣ୍ଟନ କରାଯାଇଛି ।

## ଓଡ଼ିଶା ମାଟିରେ ଏକ ନୂତନ ଜୀବାଣୁ ସାରର ସଂଧାନ

ସଘନ କୃଷିରେ ସନ୍ତୁଳିତ ଖାଦ୍ୟସାର ବ୍ୟବହାରରେ ଭାରସାମ୍ୟ ତଥା ଅବିଚାରିତା ଭାବେ କୀଟ ଓ ତୃଣ ନାଶକ ଔଷଧ ବ୍ୟବହାର ଦ୍ୱାରା ଉପୁଜୁଥିବା ପରିବେଶୀୟ ସମସ୍ୟାକୁ ଦୃଷ୍ଟିରେ ରଖି ମାଟିର ସ୍ୱାସ୍ଥ୍ୟକୁ ଅକ୍ଷୁଣ୍ଣ ରଖିବା ପାଇଁ ଚାଷ ଜମିରେ ଜୈବିକ ସାରର ପ୍ରୟୋଗ ଦିନକୁ ଦିନ ଲୋକପ୍ରିୟ ହେବାରେ ଲାଗିଛି । ଆମ ରାଜ୍ୟର ଚାଷୀଭାଇମାନେ ବିଗତ ଦଶନ୍ଧି ଧରି ରାଇଜୋବିୟମ୍, ଆଜୋଟୋବ୍ୟାକ୍ଟର ଏବଂ ଆଜୋସ୍ପିରିଲମ୍ ପ୍ରଭୃତି ଜୀବାଣୁ ସାର ବ୍ୟବହାର କରି ଆସୁଛନ୍ତି । ଏହି ତିନୋଟି ଜୀବାଣୁ ସାର ମଧ୍ୟରୁ ଆଜୋସ୍ପିରିଲମ୍ ଚାଷୀମାନଙ୍କ ଦ୍ୱାରା ବିଶେଷ ଭାବରେ ବ୍ୟବହାର ହେଉଅଛି । ମାତ୍ର ଏସବୁ ମୁଖ୍ୟତଃ କ୍ଷେତ୍ର ଫସଲ ପାଇଁ ଉଦ୍ଦିଷ୍ଟ । ଆନନ୍ଦର ବିଷୟ ଆଞ୍ଚଳିକ ଜୈବ ଉର୍ବରକ କେନ୍ଦ୍ରର ନିର୍ଦ୍ଦେଶକ ଶ୍ରୀ କୃଷ୍ଣଚନ୍ଦ୍ର ଆମ ଓଡ଼ିଶା ମାଟିରୁ ଆସେଟୋବ୍ୟାକ୍ଟର ଆଣ୍ଟୁରିଆନମ୍ ନାମକ ଏକ ଜୀବାଣୁ ଦେଶୀ କଦଳୀ ଗଛର ମୂଳ ଭାଗରେ ବାସ କରୁଥିବାର ସଂଧାନ ପାଇଛନ୍ତି । ଏହି ଜୀବାଣୁ କଲଚର ଫଳ ଓ ଫୁଲ ଗଛରେ ପରୀକ୍ଷା ମୂଳକଭାବେ ବ୍ୟବହାର କରାଯାଇ ଦେଖାଯାଇଛି ଯେ ଏହା ଏକର ପ୍ରତି ୧୨ ରୁ ୧୬ କିଗ୍ରା. ପର୍ଯ୍ୟନ୍ତ ଯବକ୍ଷାରଜାନ ଖାଦ୍ୟସାର ବାୟୁମଣ୍ଡଳରୁ ବିବଂଧନ କରି ଫସଲକୁ ଯୋଗାଇ ପାରୁଛି । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଲା ଏହା ଅମ୍ଳ ଓ କ୍ଷାରୀ ମାଟିରେ ବେଶ୍ ଭଲ କାମ କରୁଛି ଏବଂ ଏହା ମଧ୍ୟ ମାଟିକୁ ଗଂଧକ ଯୋଗାଇବାରେ ସକ୍ଷମ ଅଟେ । ଅନ୍ୟ ଜୀବାଣୁ ସାର ପରି ଏହି ଜୀବାଣୁ କଲଚର ଏକର ପ୍ରତି ୨-୪ କି.ଗ୍ରା ପ୍ରୟୋଗ କଲେ ଫସଲକୁ ଅନ୍ୟୁନ ୧୨ କିଗ୍ରା. ଯବକ୍ଷାରଜାନ ମିଳିପାରିବ । ଏହାବ୍ୟତୀତ ଏହି ଜୀବାଣୁ କଲଚର ପ୍ରୟୋଗ ଦ୍ୱାରା କେତେକ ରୋଗରୁ ମଧ୍ୟ ଫସଲକୁ ରକ୍ଷା କରାଯାଇ ପାରୁଛି ।

ଏହି ଜୀବାଣୁ ସାର ସପୁରୀ, ସେଓ ଓ ପିଯର ବ୍ୟତୀତ ସବୁ ପ୍ରକାର ଫଳ ଓ ଫୁଲ ଚାଷରେ ବ୍ୟବହାର ହୋଇପାରିବ ।

## ଓଡ଼ିଶା ମାଟିରେ ପଟାସ୍ ବ୍ୟାକ୍ଟେରିଆର ସଂଧାନ

ଉଦ୍ଭିଦର ଅଭିବୃଦ୍ଧି ନିମିତ୍ତ ୩ ଟି ମୁଖ୍ୟ ଖାଦ୍ୟସାର ଯଥା: ଯବକ୍ଷାରଜାନ, ଫସ୍ଫରସ୍ ଓ ପଟାସ୍ ଆବଶ୍ୟକ । ଆମର ଚାଷୀଭାଇ ଏଗୁଡିକୁ ରାସାୟନିକ ସାର ଓ ଜୈବିକ ତଥା ଜୀବାଣୁ ସାର ଆକାରରେ ଫସଲରେ ପ୍ରୟୋଗ କରିଥାନ୍ତି । କିନ୍ତୁ ଫସଲ ପାଇଁ ଆବଶ୍ୟକ ହେଉଥିବା ପଟାସ ମୁଖ୍ୟତଃ ରାସାୟନିକ ସାର ଓ ଜୈବିକ ସାର ଆକାରରେ ଯୋଗାଇବାକୁ ପଡିଥାଏ । ହେଲେ ଆମେ ଯେତେ ମାତ୍ରାରେ ପଟାସ ପ୍ରୟୋଗ କରୁ ତାର ଏକ ମୁଖ୍ୟ ଭାଗ ଫସଲକୁ ଉପଲବ୍ଧ ହୁଏ ନାହିଁ । ଫଳରେ ଆମେ ସାର ପ୍ରୟୋଗରୁ ଆଶାନୁରୂପ ଫଳ ପାଇ ପାରୁନାହିଁ।

କିନ୍ତୁ ଚାଷୀଭାଇ ଆଉ ନିରାଶ ହେବା ଦରକାର ନାହିଁ । ଏଣୁ ନିକଟ ଅତୀତରେ ଭାରତ ସରକାରଙ୍କ ଆଞ୍ଚଳିକ ଜୈବ ଉର୍ବରକ କେନ୍ଦ୍ରର ନିର୍ଦ୍ଦେଶକ ଶ୍ରୀ କୃଷ୍ଣଚନ୍ଦ୍ର ଓଡ଼ିଶା ମାଟିରୁ ଫସଲକୁ ପଟାସ ଉପଲବ୍ଧ କରାଇ ପାରୁଥିବା ଏହି ଜୀବାଣୁ (ବ୍ୟାକ୍ଟେରିଆ)ର ସଂଧାନ କରିଛନ୍ତି । ଏହି ଜୀବାଣୁରେ ପ୍ରସ୍ତୁତ ଜୀବାଣୁ ସାର ପ୍ରୟୋଗ, ଫସଲକୁ ଅଧିକ ୨୫-୬୦ ପ୍ରତିଶତ ପର୍ଯ୍ୟନ୍ତ ପଟାସ ଉପଲବ୍ଧ କରାଇବାରେ ସହାୟକ ହେବ। ଏହି ଜୀବାଣୁ ସାର ସମସ୍ତ ଫସଲ ପାଇଁ ବ୍ୟବହୃତ ହୋଇପାରିବ ।

## ମହାନ୍ ବିପ୍ଲବୀ ବୀର ସୁରେନ୍ଦ୍ର ସାଏଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ

ବୀର ସୁରେନ୍ଦ୍ର ସାଏ ରାଜଗାଦି ପାଇଁ ବିପ୍ଲବ କରି ନଥିଲେ, ରାଜ ପରିବାରର ପରଂପରା ସୁରକ୍ଷା ଓ ବ୍ରିଟିଶ୍ ସରକାରଙ୍କ ହୀନ ଚକ୍ରାନ୍ତ ତଥା ଅନ୍ୟାୟ ବିରୁଦ୍ଧରେ ସେ ବିପ୍ଲବର ସୂତ୍ରପାତ କରିଥିଲେ ବୋଲି ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଶ୍ରୀ ହେମାନନ୍ଦ ବିଶ୍ୱାଳ ପ୍ରକାଶ କରିଛନ୍ତି ।

ଗତ ଜାନୁଆରୀ ୨୨ ତାରିଖ ସଂଧ୍ୟାରେ ସ୍ଥାନୀୟ ସୂଚନା ଭବନଠାରେ, ସୂଚନା ଓ ଲୋକ ସମ୍ପର୍କ ବିଭାଗ ଏବଂ ପଶ୍ଚିମ ଓଡ଼ିଶା ଅଗ୍ରଣୀ ସଂଗଠନର ମିଳିତ ଆନୁକୂଲ୍ୟରେ ଆୟୋଜିତ ଓଡ଼ିଶାର ମହାନ୍ ବିପ୍ଲବୀ ବୀର ସୁରେନ୍ଦ୍ର ସାଏଙ୍କର ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଶ୍ରୀ ବିଶ୍ୱାଳ ଏହା ପ୍ରକାଶ କରିଥିଲେ । ସେ କହିଲେ ଯେ ମହାରାଜା ସାଏ ଅପୁତ୍ରିକ ହୋଇ ମୃତ୍ୟୁ ବରଣ କରିବା ପରେ ପରଂପରା କ୍ରମେ ରାଜଗାଦି ପାଇବା ପାଇଁ ହକ୍‌ଦାର ଥିବା ସୁରେନ୍ଦ୍ର ସାଏଙ୍କୁ ବଂଚିତ କରି ପ୍ରଭାବଶାଳୀ ଇଂରେଜ ସରକାର ରାଣୀ ମୋହନ କୁମାରୀଙ୍କ ହାତରେ ଶାସନ ଦାୟିତ୍ୱ ନ୍ୟସ୍ତ କରିଥିଲେ । ଏହା ଫଳରେ ସେ ପରାକ୍ରମୀ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ। ହଜାରୀବାଗ୍ ଜେଲ୍‌ରୁ ସିପାହୀମାନଙ୍କ ଦ୍ୱାରା ମୁକ୍ତ ହେବା ପରେ

ସମ୍ବଲପୁର ଅଂଚଳରେ ଲୋକମାନଙ୍କୁ ସଂଗଠିତ କରି ସେ ପୁନର୍ବାର ସଂଗ୍ରାମ ଆରମ୍ଭ କରିଥିଲେ । ଇଂରେଜମାନଙ୍କ ବିରୁଦ୍ଧରେ ଗରିଲା ଯୁଦ୍ଧ ସଂଗଠିତ କରିଥିବା ଏହି ମହାନ୍ ବିପ୍ଳବୀଙ୍କୁ ଦେଶବାସୀ ଏ ପର୍ଯ୍ୟନ୍ତ ଉପଯୁକ୍ତ ସମ୍ମାନ ଦେଇପାରି ନ ଥିବାରୁ ଶ୍ରୀ ବିଶ୍ୱାଳ କ୍ଷୋଭ ପ୍ରକାଶ କରିଥିଲେ । ସେହି ମହାନ୍ ବ୍ୟକ୍ତିଙ୍କ ତ୍ୟାଗପୂତ ଜୀବନୀ ପାଠ୍ୟକ୍ରମରେ ସ୍ଥାନ ପାଇବା ଉପରେ ଶ୍ରୀ ବିଶ୍ୱାଳ ଗୁରୁତ୍ୱ ଆରୋପ କରିଥିଲେ ।

ଆଇନ ମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକ ଉତ୍ସବରେ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ଓଡ଼ିଶାର ଚାଲିଚଳଣ ତଥା ପରଂପରାକୁ ଇଂରେଜମାନେ ଭାଙ୍ଗିବାରୁ ସୁରେନ୍ଦ୍ର ସାଏ ବିଦ୍ରୋହ କରିଥିଲେ ବୋଲି ପ୍ରକାଶ କରିଥିଲେ । ଆଜି ଆମମାନଙ୍କ ପ୍ରତି ହେଉଥିବା ଅନ୍ୟାୟକୁ ଆମେ ମୁଣ୍ଡପାତି ସହିଯାଉଛୁ । ଯୁବ ସମାଜ ମଧ୍ୟରେ ବୀର ସୁରେନ୍ଦ୍ର ସାଏଙ୍କ ଭଳି ଚେତନା ଜାଗ୍ରତ ହେବା ଦରକାର ବୋଲି ସେ ପ୍ରକାଶ କରିଥିଲେ ।

ପଶ୍ଚିମ ଓଡ଼ିଶା ଅଗ୍ରଣୀ ସଂଗଠନର ସଭାପତି ତଥା ଅବସରପ୍ରାପ୍ତ ପ୍ରଶାସକ ଶ୍ରୀ ଅବୋଧ ନାରାୟଣ ତିୱାରୀ ଉତ୍ସବରେ ମୁଖ୍ୟବକ୍ତା ରୂପେ ଉଦ୍‌ବୋଧନ ଦେଇ କହିଲେ ଯେ ନେଲସନ୍ ମାଣ୍ଡେଲା ୩୦ ବର୍ଷ କାରାବରଣ କରିଥିବାରୁ ଜାତି ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇପାରିଛି । ମାତ୍ର ବୀର ସୁରେନ୍ଦ୍ର ସାଏ ୩୭ ବର୍ଷ କାରାବରଣ କରିଥିଲେ ମଧ୍ୟ ଇତିହାସରେ ତାଙ୍କୁ ଉପଯୁକ୍ତ ସ୍ଥାନ ଦିଆଯାଇ ନାହିଁ ବୋଲି ସେ ପ୍ରକାଶ କରିଥିଲେ ।

ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଏଥିରେ ପୌରୋହିତ୍ୟ କରି କହିଲେ ଯେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିବା ଓଡ଼ିଶାର ବହୁ ବ୍ୟକ୍ତିଙ୍କର ତଥ୍ୟ ଅଭାବରୁ ଓଡ଼ିଶା ଇତିହାସରେ ସ୍ଥାନ ପାଇପାରି ନାହିଁ । ତେଣୁ ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଇତିହାସ ରଚନା ପାଇଁ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ଉଦ୍ୟମ କରାଯିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ।

ପ୍ରାରମ୍ଭରେ ସୂଚନା ଓ ଲୋକ ସଂପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ରବୀନ୍ଦ୍ର ନାଥ ଦାଶ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ମେଘନାଦ ଟୁଡୁ ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ ।

## ଚଳିତ ବର୍ଷ ୩୦ ଲକ୍ଷ ଫଳଚାରା ଉତ୍ପାଦନ କରାଯିବ

ଚଳିତ ୧୯୯୮-୯୯ ବର୍ଷରେ ରାଜ୍ୟ ଉଦ୍ୟାନ ବିଭାଗୀୟ ନର୍ସରୀରୁ ୩୦ ଲକ୍ଷ ଫଳଚାରା ଉତ୍ପାଦନ କରାଯିବ । ଗତବର୍ଷ ଉଦ୍ୟାନ ବିଭାଗ ପକ୍ଷରୁ ୨୫.୬୨ ଲକ୍ଷ ବିଭିନ୍ନ ପ୍ରକାର ଫଳଚାରା ଉତ୍ପାଦନ କରାଯାଇଥିଲା । ରାଜ୍ୟରେ ଫଳଚାରା ପ୍ରସାର ତଥା ଉନ୍ନତି କରି ଭବିଷ୍ୟତରେ ବୈଦେଶିକ ମୁଦ୍ରା ଉପାର୍ଜନ କରାଯିବା ନିମନ୍ତେ ଲକ୍ଷ୍ୟ ରଖାଯାଇଛି । ସେଥି ନିମନ୍ତେ ରାଜ୍ୟରେ ବ୍ୟାପକ ଭାବରେ ଫଳ ବଗିଚା ସୃଷ୍ଟି କରିବା ପାଇଁ ଆବଶ୍ୟକୀୟ ଉନ୍ନତମାନର ଫଳଚାରା ଉତ୍ପାଦନ କରାଯିବା ପାଇଁ ବେସରକାରୀ ନର୍ସରୀ ଉଦ୍ୟୋଗୀମାନଙ୍କୁ ମଧ୍ୟ ଉତ୍ସାହିତ କରାଯାଉଅଛି ।

୧୯୯୭-୯୮ ମସିହାରେ ରାଜ୍ୟରେ ସର୍ବମୋଟ ୩୫,୩୫୭ ହେକ୍ଟର ଜମିରେ ବିଭିନ୍ନ ପ୍ରକାର ଫଳ ଓ କାଜୁ ବାଦାମ ଚାଷ କରାଯାଇଛି । ଏଥିମଧ୍ୟରୁ ଏକ ଚକଡା ଭାବେ ୨୧,୭୯୫ ହେକ୍ଟର ଜମିରେ ବିଭିନ୍ନ ଫଳଚାଷ କରାଯାଇଥିବାବେଳେ ଚଳିତ ୧୯୯୮-୯୯ ବର୍ଷରେ ଆଉ ଅଧିକ ୨୫,୪୩୦ ହେକ୍ଟର ଜମିରେ ଏକ ଚକଡା ଫଳଚାଷ କରାଯାଉଅଛି ।

ସେହିପରି ଫୁଲଚାଷ ପରି ଏକ ଲାଭଜନକ ଚାଷକୁ ଉତ୍ସାହିତ କରିବା ତଥା ବ୍ୟବସାୟିକ ଭିତ୍ତିରେ ସହର ତଳି ଅଞ୍ଚଳରେ ଫୁଲଚାଷ ପାଇଁ ଉଦ୍ୟାନ ବିଭାଗ ପକ୍ଷରୁ ସହାୟତା ଯୋଗାଇ ଦିଆଯାଉଅଛି । ୧୯୯୭-୯୮ ବର୍ଷରେ ୧୫୫ ହେକ୍ଟର ଜମିରେ ଫୁଲଚାଷ ହୋଇଥିବା ବେଳେ ୧୯୯୮-୯୯ ବର୍ଷରେ ୨୫୦ ହେକ୍ଟର ଜମିରେ ଫୁଲଚାଷ କରାଯାଉଅଛି । ଫୁଲ ଉତ୍ପାଦନ ବୃଦ୍ଧି ନିମନ୍ତେ ମହୁମାଛିର ସହାୟତା ଯଥେଷ୍ଟ ରହିଛି । ଏଥିପାଇଁ ବ୍ୟବସାୟିକ ମହୁଚାଷ ଉପରେ ଗୁରୁତ୍ୱ ଦିଆଯାଉଅଛି । ଉନ୍ନତମାନର ମହୁମାଛି ପ୍ରଜନନ କରାଇ ଆଗ୍ରହୀ ଚାଷୀମାନଙ୍କୁ ରିହାତି ଦରରେ ମହୁମାଛି ଯୋଗାଇ ଦିଆଯାଉଅଛି ।

ଓଡ଼ିଶାର ଜଳବାୟୁ, ମୃତ୍ତିକା, ବୃଷ୍ଟିପାତ ବିଭିନ୍ନ ପ୍ରକାରର ଫଳ, ଫୁଲ, ପନିପରିବା, ମସଲା, ଅଏଲପାମ, କାଜୁବାଦାମ, ମହୁ, ଛତୁଚାଷ ପାଇଁ ଅନୁକୂଳ ଅଟେ । ତେଣୁ ଚାଷୀ ଭାଇମାନେ ଫଳ, ଫୁଲ, ପନିପରିବା, ମସଲା, ଅଏଲପାମ, କାଜୁବାଦାମ, ମହୁ , ଛତୁଚାଷ ପାଇଁ ଅନୁକୂଳ ଅଟେ । ତେଣୁ ଚାଷୀ ଭାଇମାନେ ଫଳ, ଫୁଲ ଚାଷ ପାଇଁ ଆଗେଇ ଆସିଲେ ସେମାନଙ୍କର ଆର୍ଥିକ ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ରାଜ୍ୟର ଅଭିବୃଦ୍ଧିରେ ସହାୟକ ହୋଇପାରିବେ ।

## ମୁଖ୍ୟ ଶାସନ ସଚିବଙ୍କ ସହିତ ସାମାଜିକ ଉନ୍ନୟନ ପରିଷଦ ପ୍ରତିନିଧିମାନଙ୍କ ଆଲୋଚନା

ଗତ ଜାନୁଆରୀ ୧୨ ତାରିଖରେ ରାଜ୍ୟ ସଚିବାଳୟଠାରେ ଦିଲ୍ଲୀରୁ ଆସିଥିବା ସାମାଜିକ ଉନ୍ନୟନ ପରିଷଦର ପ୍ରତିନିଧିମାନେ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ରଙ୍କ ସହିତ ରାୟଗଡା ଜିଲ୍ଲାରେ ସ୍ଥାପିତ ହେବାକୁ ଯାଉଥିବା ଆଲୁମିନିୟମ ପ୍ରକଳ୍ପ ସଂମ୍ପର୍କରେ ଆଲୋଚନା କରିଥିଲେ ।

ଏହି ବୈଠକରେ ରାୟଗଡାଠାରେ ହିଣ୍ଡାଲ କଂପାନୀ, ଲାର୍ସନ୍-ଟୁର୍ବୋ, ଉତ୍କଳ ଆଲୁମିନିୟମ ଏବଂ ଷ୍ଟୋର-ଲାଇଟ୍ କଂପାନୀମାନଙ୍କ ପକ୍ଷରୁ ସ୍ଥାପିତ ହେବାକୁ ଯାଉଥିବା ଆଲୁମିନିୟମ ପ୍ରକଳ୍ପ ସଂପର୍କରେ ବିଶଦଭାବେ ଆଲୋଚନା କରିଥିଲେ । ଆଲୋଚନାରେ ମୁଖ୍ୟତଃ ଜମି ତଥା ବାସଗୃହ ହରାଉଥିବା ଲୋକମାନଙ୍କର ଥଇଥାନ ବ୍ୟବସ୍ଥା, କ୍ଷତିପୂରଣ, ପରିବେଶ ସୁରକ୍ଷା ସମ୍ବନ୍ଧରେ ପ୍ରତିନିଧିମାନେ ମୁଖ୍ୟ ଶାସନ ସଚିବ, ବିଭିନ୍ନ ପଦସ୍ଥ କର୍ମକର୍ତ୍ତା ଏବଂ କଂପାନୀର ପ୍ରତିନିଧିମାନଙ୍କ ସହିତ ବିଶଦଭାବେ ଆଲୋଚନା କରିଥିଲେ । ଉକ୍ତ ପ୍ରକଳ୍ପ ଦ୍ୱାରା ଉଚ୍ଛେଦ ହେଉଥିବା ପରିବାର ବର୍ଗଙ୍କର ଥଇଥାନ ନିମିତ୍ତ

ଗୃହ ନିର୍ମାଣ, ଶିକ୍ଷା, ସ୍ୱାସ୍ଥ୍ୟ, ସର୍ବୋପରି ନିଯୁକ୍ତି ତଥା ରୋଜଗାର ସଂପର୍କରେ ନିର୍ଦ୍ଦିଷ୍ଟ ଭାବରେ ଅନୁଧ୍ୟାନ କରିଥିଲେ । ଏହି କାର୍ଯ୍ୟକ୍ରମରେ ସ୍ଥାନୀୟ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ସହାୟତା ଦେବା ସହିତ ମାନବିକତା ଦୃଷ୍ଟିକୋଣରୁ ସରକାର ତଥା କଂପାନୀମାନେ ଏହାର ଯତ୍ନବାନ ହେବାକୁ ଅନୁରୋଧ କରିଥିଲେ ।

## ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗର ସାଫଲ୍ୟ

ରାଜ୍ୟ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗ ଆନୁକୂଲ୍ୟରେ ଗତ ଡିସେମ୍ବର ମାସ ସୁଦ୍ଧା ୧୩,୯୧୪ଟି ସାଧାରଣ ଅଭିଯୋଗପତ୍ର ପ୍ରାପ୍ତ ହୋଇ ସେଗୁଡ଼ିକୁ ବିହିତ କାର୍ଯ୍ୟାନୁଷ୍ଠାନ ନିମନ୍ତେ ସଂପୃକ୍ତ ଅଧିକାରୀଙ୍କ ନିକଟକୁ ପ୍ରେରଣ କରାଯାଇଛି । ପ୍ରଧାନମନ୍ତ୍ରୀଙ୍କ ଦୁର୍ନୀତି ନିବାରଣ ପ୍ରକୋଷ୍ଠରୁ ଏସଂପର୍କିତ ୪୮ଟି ମାମଲା ହସ୍ତଗତ ହୋଇ ସେଗୁଡ଼ିକୁ ବିହିତ କାର୍ଯ୍ୟାନୁଷ୍ଠାନ ନିମନ୍ତେ ସଂପୃକ୍ତ ଅଧିକାରୀଙ୍କ ନିକଟକୁ ପ୍ରେରଣ କରାଯାଇଛି ।

ଏହି ସମୟ ମଧ୍ୟରେ ଜିଲ୍ଲାପାଳଙ୍କ ଅଭିଯୋଗ ପ୍ରକୋଷ୍ଠରେ ପ୍ରାପ୍ତ ୭୪,୭୯୦ଟି ସାଧାରଣ ଅଭିଯୋଗପତ୍ର ମଧ୍ୟରୁ ୬୪,୨୫୫ଟି ଅଭିଯୋଗପତ୍ର ଫଇସଲା କରାଯାଇଛି । ଏହାବ୍ୟତୀତ ୧୯୯୭-୯୮ ଆର୍ଥିକ ବର୍ଷରେ ବିଭିନ୍ନ ସରକାରୀ ବିଭାଗରେ ୬,୧୧୩ଟି ସାଧାରଣ ଅଭିଯୋଗପତ୍ର ମଧ୍ୟରୁ ୩,୩୪୨ଟି ଫଇସଲା କରାଯାଇଛି । ଗତବର୍ଷ ଜୁଲାଇ ମାସରୁ ଜିଲ୍ଲାପାଳମାନଙ୍କ ଦ୍ୱାରା ଜନସଂପର୍କ ଶିବିରମାନ ଆୟୋଜନ କରାଯାଇ ଲୋକମାନଙ୍କର ବିଭିନ୍ନ ସମସ୍ୟାଗୁଡ଼ିକୁ ସମାଧାନ କରାଯାଇଛି । ବର୍ତ୍ତମାନ ସୁଦ୍ଧା ୩୨ଟି ଜନ ସଂପର୍କ ଶିବିର ଅନୁଷ୍ଠିତ ହୋଇ ୧୫,୮୬୪ ଜଣ ବ୍ୟକ୍ତି ଉପକୃତ ହୋଇଛନ୍ତି ।

ପୁରାତନ ପେନ୍‌ସନ୍ ମାମଲାଗୁଡ଼ିକ ମଧ୍ୟରୁ ୩,୩୯୮ଟି ପେନ୍‌ସନ୍ ଗ୍ରାଚ୍ୟୁଇଟି ନପାଇବା ସମ୍ବନ୍ଧରେ ଦରଖାସ୍ତ ମଧ୍ୟରୁ ୧୯୫୮ଟି ମାମଲା ପତ୍ରାଳାପ ମାଧ୍ୟମରେ ଫଇସଲା କରାଯାଇଛି । ୩୩ଟି ପେନ୍‌ସନ୍ ଅଦାଲତ ଜିଲ୍ଲା ସଦର ମହକୁମା ଓ ରାଜ୍ୟ ସଦର ମହକୁମାରେ କରାଯାଇ ୪୬୩୯ଟି ପେନ୍‌ସନ୍ ମାମଲା ବିଚାରକୁ ନିଆଯାଇ ତନ୍ମଧ୍ୟରୁ ୩,୪୦୧ଟି ଫଇସଲା କରାଯାଇଛି । ଏହି ସମୟ ମଧ୍ୟରେ ୫୨,୩୦୮ ଜଣ ଅବସରପ୍ରାପ୍ତ ସରକାରୀ କର୍ମଚାରୀ/ପେନ୍‌ସନ୍ ପାଇବା ପାଇଁ ଆବେଦନ ମଧ୍ୟରୁ ୫୧,୯୦୦ ଜଣଙ୍କୁ ପେନ୍‌ସନ୍ ପ୍ରଦାନ କରାଯାଇଥିବା ରାଜ୍ୟ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗ ସୂତ୍ରରୁ ପ୍ରକାଶ କରାଯାଇଛି ।

ଲୋକପାଳ ଓ ଲୋକାୟୁକ୍ତ ଆଇନ ୧୯୯୫ ମସିହା ଅଗଷ୍ଟ ମାସରୁ କାର୍ଯ୍ୟକାରୀ ହୋଇ ୩୫ଟି କେଶ୍ ବିଚାର ପାଇଁ ହାତକୁ ନିଆଯାଇଛି । ଅବସରପ୍ରାପ୍ତ ବିଚାରପତି ଶ୍ରୀ କୃଷ୍ଣପ୍ରସାଦ ମହାପାତ୍ର ଗତ ୧୬.୭.୯୭ ତାରିଖଠାରୁ ଓଡ଼ିଶାର ଲୋକପାଳ ଭାବେ ଶପଥ ନେଇ କାର୍ଯ୍ୟଭାର ତୁଲାଉଛନ୍ତି ।

## ମହାରାଜା ଶ୍ରୀ ରାମଚନ୍ଦ୍ର ଭଂଜଦେଓଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହ

ସୂଚନା ଓ ଲୋକ ସମ୍ପର୍କ ବିଭାଗ ଏବଂ ମୟୂରଭଂଜ ସାଂସ୍କୃତିକ ସଂସଦର ମିଳିତ ଆନୁକୂଲ୍ୟରେ ଗତ ଡିସେମ୍ବର ୧୭ ତାରିଖରେ ସ୍ଥାନୀୟ ସୂଚନା ଭବନଠାରେ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହରେ ପାଳିତ ହୋଇଯାଇଛି । ଏଥିରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ରାଜ୍ୟ ପରିବେଶ, ବିଜ୍ଞାନ ଓ କାରୀଗରି ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଦାଶ କହିଲେ ଯେ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ ଦରିଦ୍ର ପ୍ରଜାବତ୍ସଳ, ପରୋପକାରୀ ଭଳି ଅନେକ ମହନୀୟ ଗୁଣର ଅଧିକାରୀ ଥିଲେ । ଗର୍ବ, ଅହଂକାରଠାରୁ ସେ ଦୂରରେ ରହି, ସାଧାରଣ ମଣିଷର ମନକୁ ଓ ତା'ର ବେଦନାକୁ ବୁଝିବାର କ୍ଷମତା ତାଙ୍କ ପାଖରେ ଥିଲା । ଓଡ଼ିଶା ପ୍ରଦେଶ ଗଠନ ପାଇଁ ଚେତନା ଜାଗ୍ରତ କରାଇବାକୁ ସେ ଓଡ଼ିଆ ପଠନ, ଭାଷା ଓ ସାହିତ୍ୟର ବିକାଶ ଉପରେ ପ୍ରାଧାନ୍ୟ ଦେଇଥିଲେ । ମାନବିକ ମୂଲ୍ୟବୋଧ, ଓଡ଼ିଆର ସ୍ୱାଭିମାନ, ନିରପେକ୍ଷ ଶାସନ, ନ୍ୟାୟପାଳିକାକୁ କ୍ଷମତା ଆଦି ପ୍ରତ୍ୟେକ ବିଷୟ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରି ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ ଏକ ବିରଳ ଆଦର୍ଶର ସ୍ଥାପନା କରିଯାଇଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ଦାଶ ମତପ୍ରକାଶ କରିଥିଲେ ।

ମୁଖ୍ୟବକ୍ତା ଭାବରେ ଯୋଗ ଦେଇ ସାହିତ୍ୟିକ ଶ୍ରୀ ଅସୀତ କବି କହିଲେ ଯେ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ ନବଜାଗରଣର ସ୍ରଷ୍ଟା । ଓଡ଼ିଆ ଭାଷା ଓ ସାହିତ୍ୟକୁ ସୁଦୃଢ଼ ଭିତ୍ତିଭୂମି ପ୍ରଦାନ କରିବାରେ ତାଙ୍କ ଅବଦାନକୁ ଓଡ଼ିଶା ଇତିହାସ ସ୍ୱୀକାର କରିଛି । ଉତ୍କଳ ସମ୍ମିଳନୀର ପ୍ରଥମ ସଭାପତି ଭାବରେ ଓଡ଼ିଆ ଜାତିର ଏକତ୍ରୀକରଣ ପାଇଁ ତାଙ୍କର ଉଦ୍ୟମ ଅନସ୍ୱୀକାର୍ଯ୍ୟ । ତାଙ୍କ ପରି ମନିଷୀ ଧରାପୃଷ୍ଠରେ ଖୁବ୍ କମ୍ ଜନ୍ମଗ୍ରହଣ କରିଛନ୍ତି, ଯିଏକି ଏକାଧାରରେ ଅନେକ ଅନନ୍ୟ ଗୁଣର ଅଧିକାରୀ ହୋଇପାରିଛନ୍ତି । ସେ ଥିଲେ ସରଳତାର ପ୍ରତୀକ; ଦାନଶୀଳ, ଆଦର୍ଶ ପ୍ରଶାସକ । ଜାତୀୟ ଚେତନା ସହ ତାଙ୍କ ଚେତନା ଏକୀଭୂତ ହୋଇଯାଇଥିଲା । ଏହି ଅମର ଅମୃତର ସନ୍ତାନ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ପ୍ରକାଶ କରାଯିବା ପାଇଁ ଡଃ କବି ପ୍ରସ୍ତାବ ଦେଇଥିଲେ ।

ସମାରୋହରେ ସଭାପତିତ୍ୱ କରି ସୂଚନା ଓ ଲୋକ ସଂପର୍କ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ସଂଜୀବ ଚନ୍ଦ୍ର ହୋତା କହିଲେ ଯେ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ କ୍ଷଣସ୍ଥାୟୀ ଜୀବନରେ ଯେଉଁ ଚିରସ୍ଥାୟୀ ସାଂସ୍କୃତିକ ବୈଭବ ଉତ୍କଳ ମାଟିରେ ରଖିଯାଇଛନ୍ତି, ତାହା ଅବିସ୍ମରଣୀୟ । ତାଙ୍କର ଜୀବନଚର୍ଯ୍ୟା ପରେ ମଧ୍ୟ, ତାଙ୍କର ଆଦର୍ଶ ଜନମାନସରେ ପରିଲକ୍ଷିତ ହୋଇଛି ।

ସମାରୋହରେ ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ରବୀନ୍ଦ୍ର ନାଥ ଦାଶ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ଓ ମୟୂରଭଂଜ ସାଂସ୍କୃତିକ ସଂସଦର ଯୁଗ୍ମ ସଂପାଦକ ଶ୍ରୀ ମନୋରଂଜନ ଦାସ ଧନ୍ୟବାଦ ଅର୍ପଣ କରିଥିଲେ ।

## ବାର୍ଦ୍ଧକ୍ୟଭତ୍ତା ଓ ବିଧବାଭତ୍ତା ଯୋଜନା ବାବଦକୁ ୫ କୋଟି ୨୫ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଆବଣ୍ଟନ

ଚଳିତ ଆର୍ଥିକ ବର୍ଷରେ ଡିସେମ୍ବର ମାସର ବାର୍ଦ୍ଧକ୍ୟ ଭତ୍ତା ଓ ବିଧବା ଭତ୍ତା ଯୋଜନା ବାବଦରେ ସରକାର ରାଜ୍ୟର ସମସ୍ତ ଜିଲ୍ଲାକୁ ୫ କୋଟି ୨୫ ଲକ୍ଷ ୨୦ ହଜାର ୩୦୦ ଟଙ୍କା ଆବଣ୍ଟନ କରିଛନ୍ତି । ଏହି ପରିମିତ ଭତ୍ତା ପ୍ରଦାନ ଦ୍ୱାରା ରାଜ୍ୟର ୫ ଲକ୍ଷ ୩୦ ହଜାର ହିତାଧିକାରୀ ଉପକୃତ ହେବେ ।

ଉପରୋକ୍ତ ପରିମାଣ ଟଙ୍କାରୁ ଫୁଲବାଣୀ ଜିଲ୍ଲାକୁ ୧୨ ଲକ୍ଷ ୪୯ ହଜାର ୪୦୦ ଟଙ୍କା, ରାୟଗଡା ଜିଲ୍ଲାକୁ ୧୪ ଲକ୍ଷ ୪୦ ହଜାର ଟଙ୍କା, ସୋନପୁର ଜିଲ୍ଲାକୁ ୬ ଲକ୍ଷ ୫୯ ହଜାର ୧୦୦ ଟଙ୍କା, ସମ୍ବଲପୁର ଜିଲ୍ଲାକୁ ୧୨ ଲକ୍ଷ ୬୦ ହଜାର ଟଙ୍କା, ସୁନ୍ଦରଗଡ ଜିଲ୍ଲାକୁ ୧୭ ଲକ୍ଷ ୫୨ ହଜାର ୭୦୦ ଟଙ୍କା, ଅନୁଗୁଳ ଜିଲ୍ଲାକୁ ୧୫ ଲକ୍ଷ ୬୬ ହଜାର ୪୦୦ ଟଙ୍କା ଓ ବାଲେଶ୍ୱର ଜିଲ୍ଲାକୁ ୨୧ ଲକ୍ଷ ୬୦ ହଜାର ୪୦୦ ଟଙ୍କା ଦିଆଯାଇଛି ।

ସେହିପରି ଭଦ୍ରକ ଜିଲ୍ଲାକୁ ୧୭ ଲକ୍ଷ ୮୦ ହଜାର ୫୦୦ ଟଙ୍କା, ବଲାଙ୍ଗୀର ଜିଲ୍ଲାକୁ ୨୨ ଲକ୍ଷ ୨ ହଜାର ୨୦୦ ଟଙ୍କା, ବରଗଡ ଜିଲ୍ଲାକୁ ୧୭ ଲକ୍ଷ ୯୫ ହଜାର ୬୦୦ ଟଙ୍କା, ବୌଦ ଜିଲ୍ଲାକୁ ୫ ଲକ୍ଷ ୩ ହଜାର ୬୦୦ ଟଙ୍କା, କଟକ ଜିଲ୍ଲାକୁ ୩୮ ଲକ୍ଷ ୯୮ ହଜାର ୨୦୦ ଟଙ୍କା, ଢେଙ୍କାନାଳ ଜିଲ୍ଲାକୁ ୧୭ ଲକ୍ଷ ୬୦୦ ଟଙ୍କା ଓ ଦେବଗଡ ଜିଲ୍ଲାକୁ ୪ ଲକ୍ଷ ୪୯ ହଜାର ୮୦୦ ଟଙ୍କା ଆବଣ୍ଟନ କରାଯାଇଛି ।

ଗଞ୍ଜାମ ଜିଲ୍ଲାକୁ ୩୮ ଲକ୍ଷ ୮୯ ହଜାର ୩୦୦ ଟଙ୍କା, ଗଜପତି ଜିଲ୍ଲାକୁ ୯ ଲକ୍ଷ ୨୨ ହଜାର ୭୦୦ ଟଙ୍କା, ପୁରୀ ଜିଲ୍ଲାକୁ ୧୨ ଲକ୍ଷ ୮୫ ହଜାର ଟଙ୍କା, ନୟାଗଡ ଜିଲ୍ଲାକୁ ୧୨ ଲକ୍ଷ ୮୬ ହଜାର ୯୦୦ ଟଙ୍କା, ନବରଙ୍ଗପୁର ଜିଲ୍ଲାକୁ ୧୬ ଲକ୍ଷ ୭୬ ହଜାର ୯୦୦ ଟଙ୍କା, ନୂଆପଡା ଜିଲ୍ଲାକୁ ୧୩ ଲକ୍ଷ ୩୩ ହଜାର ୪୦୦ ଟଙ୍କା ଓ ମାଲକାନାଗିରି ଜିଲ୍ଲାକୁ ୯ ଲକ୍ଷ ୭୩ ହଜାର ୨୦୦ ଟଙ୍କା ଦିଆଯାଇଛି । ମୟୂରଭଞ୍ଜ ଜିଲ୍ଲାକୁ ୨୭ ଲକ୍ଷ ୭୨ ହଜାର ୮୦୦ ଟଙ୍କା, ଖୋର୍ଦ୍ଧା ଜିଲ୍ଲାକୁ ୧୮ ଲକ୍ଷ ୪୩ ହଜାର ୩୦୦ ଟଙ୍କା ଦିଆଯାଇଥିବା ବେଳେ କୋରାପୁଟ ଜିଲ୍ଲାକୁ ୧୮ ଲକ୍ଷ ୮୧ ହଜାର ଟଙ୍କା ଦଆଯାଇଛି । କେନ୍ଦ୍ରାପଡା, କେଉଁଝର, କଳାହାଣ୍ଡି, ଜଗତସିଂହପୁର, ଯାଜପୁର ଓ ଝାରସୁଗୁଡା ଜିଲ୍ଲାକୁ ଯଥାକ୍ରମେ ୨୭ ଲକ୍ଷ ୭୨ ହଜାର ୩୦୦ ଟଙ୍କା, ୧୯ ଲକ୍ଷ ୨୫ ହଜାର ୬୦୦ ଟଙ୍କା, ୩୯ ଲକ୍ଷ ୩୪ ହଜାର ୩୦୦ ଟଙ୍କା, ୧୫ ଲକ୍ଷ ୭୩ ହଜାର ୩୦୦ ଟଙ୍କା, ୧୫ ଲକ୍ଷ ୬୦ ହଜାର ୩୦୦ ଟଙ୍କା ଓ ୫ ଲକ୍ଷ ୬୩ ହଜାର ୫୦୦ ଟଙ୍କା ଦିଆଯାଇଛି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।

## ଭୁବନେଶ୍ୱରରେ ସୂଚନା ଓ ଜ୍ଞାନ କୌଶଳ ସମ୍ପର୍କିତ ଆନ୍ତର୍ଜାତିକ ସମ୍ମିଳନୀ

ସୂଚନା ଓ ପ୍ରଯୁକ୍ତି ବିଦ୍ୟା ସମ୍ପର୍କିତ ଏକ ଆନ୍ତର୍ଜାତିକ ସମ୍ମିଳନୀ ଗତ ଡିସେମ୍ବର ୨୧ ତାରିଖରେ ଭୁବନେଶ୍ୱରସ୍ଥ 'ପ୍ରାଚୀ' ହୋଟେଲଠାରେ ଅନୁଷ୍ଠିତ ହୋଇଯାଇଛି । ଓଡ଼ିଶା ସୂଚନା ପ୍ରଯୁକ୍ତି ବିଦ୍ୟା ସଂଘର ସହଯୋଗରେ ଓଡ଼ିଶା ସୂଚନା ପ୍ରଯୁକ୍ତି ବିଦ୍ୟା ସମିତି ( ଓ.ଆଇ.ଟି.ଏସ୍) ଓ ଉତ୍କଳ ବିଶ୍ୱବିଦ୍ୟାଳୟର ମିଳିତ ଆନୁକୂଲ୍ୟରେ ଆୟୋଜିତ ଏହି ଆନ୍ତର୍ଜାତିକ ସମ୍ମିଳନୀକୁ ରାଜ୍ୟ ଶିଳ୍ପ ମନ୍ତ୍ରୀ ଶ୍ରୀ ନିରଂଜନ ପଟ୍ଟନାୟକ ଉଦ୍‌ଘାଟନ କରି କହିଲେ ଯେ ଏକବିଂଶ ଶତାବ୍ଦୀ ସୂଚନା ଜ୍ଞାନ କୌଶଳର ଶତାବ୍ଦୀ ହେବାକୁ ଯାଉଛି । ଏହାକୁ ଦୃଷ୍ଟିରେ ରଖି ରାଜ୍ୟରେ ଉପଯୁକ୍ତ ତଥା ଅତ୍ୟାଧୁନିକ ବୈଷୟିକ ଜ୍ଞାନ ସଂପନ୍ନ ବ୍ୟକ୍ତି ସୃଷ୍ଟି କରିବା ପାଇଁ ଯେଉଁ ସମସ୍ତ ପ୍ରକାର ଭିତ୍ତିଭୂମି ପ୍ରସ୍ତୁତ କରାଯାଉଛି, ଏହା ଫଳରେ ଓଡ଼ିଶା ପୃଥିବୀର ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିପାରିବ ବୋଲି ମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଆଶା ପ୍ରକାଶ କରିଥିଲେ ।

ମୁଖ୍ୟ ଅତିଥିଭାବେ ଯୋଗ ଦେଇ କେନ୍ଦ୍ର ଇଲେକ୍ଟ୍ରୋନିକ୍ସ ବିଭାଗର ସଚିବ ଶ୍ରୀ ରବୀନ୍ଦ୍ର ଗୁପ୍ତା ସବୁ କ୍ଷେତ୍ରରେ ସୂଚନା ଜ୍ଞାନ କୌଶଳର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି ପ୍ରକାଶ କରିଥିଲେ ।

ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ସମ୍ମାନିତ ଅତିଥି ଭାବେ ଯୋଗ ଦେଇ କହିଲେ ଯେ ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟରେ ପରିଣତ ହେବାକୁ ଯାଉଛି । ତେଣୁ ରାଜ୍ୟ ସରକାର ସୂଚନା ପ୍ରଯୁକ୍ତି ବିଦ୍ୟା ନୀତି ଅନୁଯାୟୀ ସ୍କୁଲ, କଲେଜରେ କଂପ୍ୟୁଟର ପ୍ରଚଳନ, ଶିକ୍ଷକମାନଙ୍କୁ ତାଲିମ, ସ୍ଥାନୀୟ ଘରୋଇ କଂପ୍ୟୁଟର ସଂସ୍ଥାମାନଙ୍କୁ ଯଥା ସମ୍ଭବ ପ୍ରୋତ୍ସାହନ ପ୍ରଭୃତି ଦିଆଯିବା ଲାଗି ବ୍ୟବସ୍ଥା କରିଛନ୍ତି ।

## ସାମ୍ବାଦିକମାନେ ସଂବାଦ ସଂଗ୍ରହ ଓ କର୍ତ୍ତବ୍ୟ ସଂପାଦନରେ ସର୍ବଦା ସରକାରଙ୍କ ସହଯୋଗ ପାଇବେ — ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ

ଗତ ଡିସେମ୍ବର ୧୩ ତାରିଖରେ ସ୍ଥାନୀୟ ଲୋକ ସମ୍ପର୍କ ଭବନରେ ରାଜ୍ୟର ବିଭିନ୍ନ ସାଂବାଦିକ ଓ ସଂବାଦପତ୍ର କର୍ମଚାରୀ ସଂଘର କର୍ମକର୍ତ୍ତାମାନଙ୍କ ସହ ବୈଠକରେ ରାଜ୍ୟର ସୂଚନା ଓ ଲୋକ ସଂପର୍କ ବିଭାଗ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ସାଂବାଦିକ ଓ ସରକାର ନିଜ ନିଜ କର୍ତ୍ତବ୍ୟ ସଂପାଦନରେ କିପରି ପାରସ୍ପରିକ ସହଯୋଗ ପାଇପାରିବେ, ତାହା ଆଲୋଚନା କରିଥିଲେ ।

ପ୍ରସଂଗକ୍ରମେ ସେ ସୂଚାଇଥିଲେ ଯେ ସଂବାଦପତ୍ର ରେଜିଷ୍ଟ୍ରରଙ୍କ ପୂର୍ବାଂଚଳ କଲିକତା କାର୍ଯ୍ୟାଳୟ ଆମ ରାଜ୍ୟର ସଂବାଦପତ୍ରମାନଙ୍କର ନାମ ପଂଜିକରଣ ଓ ଅନ୍ୟାନ୍ୟ ବିଧିଗତ କାର୍ଯ୍ୟ

ତ୍ୱରାନ୍ୱିତ କରିବାକୁ ସେ ଗତମାସ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ରାଜ୍ୟ ସରକାରଙ୍କ ନୂତନ ସୂଚନା ନୀତି ପ୍ରଣୟନ ବେଳେ ସମ୍ବାଦପତ୍ରଗୁଡିକର ସଂପାଦକ ଓ ଅନ୍ୟାନ୍ୟ ସାଂବାଦିକମାନେ ସମୁଚିତ ପରାମର୍ଶ ଦେବାକୁ ସେ ଅନୁରୋଧ କରିଥିଲେ । ଭାରତୀୟ ପ୍ରେସ୍ କାଉନ୍‌ସିଲ୍‌ଙ୍କ କ୍ଷମତା ପରିସର ମଧ୍ୟରେ ସେ ଯେଉଁ କେତେକ ସୁବିଧା ସୁଯୋଗ କର୍ମଜୀବି ସାଂବାଦିକମାନଙ୍କୁ ଦିଆଯିବା ଉଚିତ ବୋଲି ବିଚାର କରିଥିଲେ ତାକୁହିଁ ଭିତ୍ତିକରି ରାଜ୍ୟ ସରକାର ଏକ ନିଷ୍ପତ୍ତି ନେଇଥିଲେ । କିନ୍ତୁ ବିଭିନ୍ନ ସାଂବାଦିକ ସଂଘ ପକ୍ଷରୁ ଏହାର ପୁନଃ ସମୀକ୍ଷା କରିବାକୁ ଅନୁରୋଧ କରାଯାଇଥିବାରୁ ସରକାର ପୂର୍ବ ସୁବିଧା ଓ ରିହାତି ଗୁଡିକ ପ୍ରଦାନ କରିବେ ବୋଲି ସେ ଘୋଷଣା କରିଥିଲେ । ଗ୍ରାମାଞ୍ଚଳ ସାଂବାଦିକଙ୍କ ସମେତ ସମସ୍ତ ସାଂବାଦିକଙ୍କୁ ଚିହ୍ନଟ କରିବାରେ ଶ୍ରମ ବିଭାଗର ପଦକ୍ଷେପକୁ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସବୁମତେ ସହଯୋଗ କରିବ । ପେନ୍‌ସନ୍ ବ୍ୟବସ୍ଥା, କଲ୍ୟାଣ ପାଣ୍ଠି, ପ୍ରେସ୍ ଏକାଡେମୀ, ଅଧିସ୍ୱୀକୃତି ପ୍ରଦାନ ଓ ଗ୍ରାମ୍ୟ ସାଂବାଦିକ ସମସ୍ୟା ଇତ୍ୟାଦି ସଂପର୍କରେ ବିଭିନ୍ନ ରାଜ୍ୟ ସରକାରଙ୍କ ପ୍ରଚଳିତ ନୀତି ପ୍ରତ୍ୟକ୍ଷଭାବେ ସେ ଅନୁଧ୍ୟାନ କରିବେ ବୋଲି ଶ୍ରୀ ସିଂହ ସୂଚାଇଥିଲେ ।

ସାଂବାଦିକମାନେ ମତ ଦେଇଥିଲେ ଯେ ସୂଚନା ନୀତି ପ୍ରଣୟନ ବେଳେ ଯୁକ୍ତରାଷ୍ଟ୍ର ଆମେରିକାର ଢାଞ୍ଚାରେ ଏକବିଂଶ ଶତାବ୍ଦୀ ପାଇଁ ଏକ ଉନ୍ନତ ସୂଚନା ପ୍ରଯୁକ୍ତି ପରିଚାଳନା ଭାର ସୂଚନା ଓ ଲୋକ ସଂପର୍କ ବିଭାଗ ନେବା ଉଚିତ । କେନ୍ଦ୍ର ଅଧିସ୍ୱୀକୃତି କମିଟି ଢାଞ୍ଚାରେ ସାଂବାଦିକମାନଙ୍କୁ ଅଧିସ୍ୱୀକୃତି ନବୀକରଣ ହେଉ ବୋଲି ମତପ୍ରକାଶ ପାଇଥିଲା । ଲୋକ ସଂପର୍କ ବିଭାଗ ପକ୍ଷରୁ ଜିଲ୍ଲା ଓ ରାଜ୍ୟ ସ୍ତରରୁ ଯେଉଁ ଲିଖିତ ସଂବାଦ ଯୋଗା ଯାଉଛି ତା'ର କିପରି ସଦୁପଯୋଗ ହୋଇପାରିବ ତାହା ବିସ୍ତୃତଭାବେ ଆଲୋଚିତ ହୋଇଥିଲା ।

ଉତ୍କଳ ଜର୍ଣ୍ଣାଲିଷ୍ଟ ଆସୋସିଏସନ, ଓଡ଼ିଶା ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ୍, ଅଲ୍ ଓଡ଼ିଶା ନିଉଜ୍ ପେପର ଏମ୍ପ୍ଲଇଜ୍ ୟୁନିୟନ୍, ଉତ୍କଳମଣି ନିଉଜ୍ ପେପର ଏମ୍ପ୍ଲଇଜ୍ ୟୁନିୟନ୍ ଓ ଓଡ଼ିଶା ୟୁନିୟନ୍ ଅଫ୍ ୱାର୍କିଂ ଜର୍ଣ୍ଣାଲିଷ୍ଟସ୍ ଇତ୍ୟାଦି ଅନୁଷ୍ଠାନର କର୍ମକର୍ତ୍ତାମାନେ ଏହି ବୈଠକରେ ଉପସ୍ଥିତ ଥିଲେ ।

## ଚଳିତ ରବି ଋତୁରେ ୧ ଲକ୍ଷ ୮୭ ହଜାର କ୍ୱିଣ୍ଟାଲ ପ୍ରାମାଣିକ ବିହନ ଯୋଗାଇ ଦିଆଯିବ

ଗତ ଖରିଫ ଋତୁରେ ସ୍ୱଳ୍ପ ବୃଷ୍ଟି ଯୋଗୁଁ ରାଜ୍ୟର ବିଭିନ୍ନ ସ୍ଥାନରେ ମରୁଡି ପରିସ୍ଥିତି ସୃଷ୍ଟି ହୋଇ ବ୍ୟାପକ ଫସଲ କ୍ଷତି ହୋଇଛି । ଖରିଫର ଶେଷଭାଗରେ ସେପ୍ଟେମ୍ବର ପ୍ରଥମ ସପ୍ତାହର ଓ ଅକ୍ଟୋବର ଦ୍ୱିତୀୟ ସପ୍ତାହରେ ଅତ୍ୟଧିକ ବର୍ଷା ହେତୁ ଖାଲୁଆ ଜମିଗୁଡିକ ଜଳମଗ୍ନ ହେବା ଫଳରେ ସେଠାରେ ଥିବା ଫସଲ ମଧ୍ୟ ବିଶେଷ ଭାବରେ କ୍ଷତିଗ୍ରସ୍ତ ହୋଇଛି । ଖରିଫ ଫସଲରେ ପ୍ରତିକୂଳ ପାଗର ପ୍ରଭାବ ହେତୁ ଚାଷୀର କ୍ଷତିକୁ ଭରଣା କରିବା ନିମନ୍ତେ ରବି କାର୍ଯ୍ୟକ୍ରମକୁ ବ୍ୟାପକ କରିବା ପାଇଁ ମାଟିରେ ଥିବା ବତରକୁ ଉପଯୋଗ କରି ଅଧିକ ଜମିରେ ଡାଲି ଫସଲ, ସୋରିଷ, ଚିନାବାଦାମ ଆଦି ତୈଳବୀଜ, ବୁଟ, ମଟର ଆଦି ଚାଷ କରିବା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି । ଏଥି ନିମନ୍ତେ ଚଳିତ ରବି ଋତୁରେ କୃଷି ବିଭାଗ ପକ୍ଷରୁ ୧ ଲକ୍ଷ ୮୭ ହଜାର କ୍ୱିଣ୍ଟାଲ ପ୍ରାମାଣିକ ବିହନ ଯୋଗାଇ ଦିଆଯିବ । ତନ୍ମଧ୍ୟରୁ ୮୩,୨୦୦ କ୍ୱିଣ୍ଟାଲ ଧାନ ବିହନ, ୭୫୦୦ କ୍ୱିଣ୍ଟାଲ ଗହମ, ୧୯୦୦ କ୍ୱିଣ୍ଟାଲ ମକା, ୬୨୦୦ କ୍ୱିଣ୍ଟାଲ ମୁଗ, ୫୫୦୦ କ୍ୱିଣ୍ଟାଲ ବିରି, ୨୦୦୦ କ୍ୱିଣ୍ଟାଲ ବୁଟ, ୨୯୦୦ କ୍ୱିଣ୍ଟାଲ ମଟର, ୭୫,୦୦୦ କ୍ୱିଣ୍ଟାଲ ଚିନାବାଦାମ, ୪୦୦୦ କ୍ୱିଣ୍ଟାଲ ସୋରିଷ, ୧୩୦୫ କ୍ୱିଣ୍ଟାଲ ରାଶି, ୩୫୦ କ୍ୱିଣ୍ଟାଲ ପେଶି, ୪୨୫ କ୍ୱିଣ୍ଟାଲ କୁସୁମ ଓ ୪୫୦ କ୍ୱିଣ୍ଟାଲ ସୂର୍ଯ୍ୟମୁଖୀ ବିହନ ଅଛି । ଏହି ବିହନ ଗୁଡିକ ରାଜ୍ୟ ବିହନ ନିଗମ ଓ କୃଷି ବିଭାଗର ବିହନ କେନ୍ଦ୍ରମାନଙ୍କ ଜରିଆରେ ସରକାରୀ ନିର୍ଦ୍ଧାରିତ ମୂଲ୍ୟରେ ଚାଷୀମାନଙ୍କୁ ଯୋଗାଇ ଦିଆଯିବ । ବିହନ ଯୋଗାଣରେ କୌଣସି ଅସୁବିଧା ବା ଅନିୟମିତତା ଦେଖା ଦେଲେ ତାହାର ଦୂରୀକରଣ ପାଇଁ କୃଷି ନିର୍ଦ୍ଦେଶକ ଅଥବା କୃଷି ବିଭାଗର ସ୍ଥାନୀୟ କର୍ମକର୍ତ୍ତାଙ୍କ ଦୃଷ୍ଟିକୁ ଆଣିବା ନିମନ୍ତେ ଚାଷୀମାନଙ୍କୁ ପରାମର୍ଶ ଦିଆଯାଉଛି ।

OGP—MP—PTS (I&PR) 61—3,000—11-3-1999



ରାଜ୍ୟ ସୂଚନା ଭବନଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ପକ୍ଷରୁ ଅନୁଷ୍ଠିତ ବୀରତା ଦିବସ ସମାରୋହକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି । ୩୧-୧୨




ଜାରପଡ଼ାର ଶ୍ରୀ ଜଗନ୍ନାଥ ମହାବିଦ୍ୟାଳୟରେ ଜାତୀୟ ସେବା ଯୋଜନା କାର୍ଯ୍ୟକ୍ରମ ପରିଦର୍ଶନ କରି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଶିବିରାର୍ଥୀମାନଙ୍କୁ ଭାଷଣ ଦେଉଛନ୍ତି । ୭-୧



ରାଜ୍ୟ ସୂଚନା ଭବନଠାରେ ଅନୁଷ୍ଠିତ କୃତୀ କ୍ରୀଡାବିତ୍‌ମାନଙ୍କ ସମ୍ବର୍ଦ୍ଧନା ଉତ୍ସବରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏସିଆଡ୍ ସ୍ୱର୍ଣ୍ଣପଦକ ବିଜେତା କୃତୀ ହକି ଖେଳାଳୀ
ଶ୍ରୀ ଦିଲ୍ଲୀପ୍ ତିର୍କୀ ଓ ଶ୍ରୀ ଲାଜରସ୍ ବାର୍ଲାଙ୍କୁ ଏକଲକ୍ଷ ଟଙ୍କାର ଚେକ୍ ପ୍ରଦାନ କରୁଛନ୍ତି । ୩-୧



ରବୀନ୍ଦ୍ର ମଣ୍ଡପଠାରେ ଭାରତୀୟ ମନସ୍ତାତ୍ତ୍ୱିକ ପରିଷଦ ଆନୁକୂଲ୍ୟରେ ଆୟୋଜିତ ଏକ ଉତ୍ସବରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଦେଶର ବରିଷ୍ଠ ମନସ୍ତତ୍ତ୍ୱବିତ୍‌ମାନଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି । ୭-୧



ହୋଟେଲ ନୀଳାଚଳ ଅଶୋକ, ପୁରୀଠାରେ ଆୟୋଜିତ ରୋଟାରୀ କ୍ଲବ୍ ସମିଳନୀ 'ସ୍ୱପ୍ନ-୯୯'
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଉଦ୍ ଘାଟନ କରୁଛନ୍ତି । ୮-୧



ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ଡାକ୍ତର ଖୁଦିଆ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବରେ ଅବକାରୀ ମନ୍ତ୍ରୀ
ଶ୍ରୀ ସୁରେଶ କୁମାର ରାଉତରାୟ ଡାକ୍ତର ଖୁଦିଆଙ୍କ ଫଟୋ ଚିତ୍ରରେ ମାଲ୍ୟାର୍ପଣ କରୁଛନ୍ତି । ଲୋକ ସମ୍ପର୍କ
ନିର୍ଦ୍ଦେଶକ ଶ୍ରୀ ଆର୍.ଏନ୍. ଦାଶ ଉପସ୍ଥିତ ଅଛନ୍ତି । ୨୦-୧



ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କ ସରକାରୀ ବାସଭବନ ପରିସରରେ ବିଧାୟକ ଡଃ ଦିଲ୍ଲୀପ
ଶ୍ରୀଚନ୍ଦନଙ୍କ ରଚିତ ବିଧାନସଭା କବିତା ଓ ଡକ୍ଟର୍ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀଙ୍କ ରଚିତ ଉତ୍କଳର ବାଣୀପୁତ୍ର
ଗୋକୁଳାନନ୍ଦ ପୁସ୍ତକଦ୍ୱୟ ଉନ୍ମୋଚନ କରୁଛନ୍ତି । ୩୧-୧୨



ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ନେତାଜୀ ସୁଭାଷ ବୋଷଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହରେ
ମୁଖ୍ୟ ଅତିଥି ମାନ୍ୟବର ରାଜସ୍ୱ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ, ମୁଖ୍ୟବକ୍ତା ସ୍ୱାଧୀନତା ସଂଗ୍ରାମୀ
ଶ୍ରୀ ମନମୋହନ ମିଶ୍ର ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ । ୨୩-୧




ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ବୀର ସୁରେନ୍ଦ୍ର ସାଏଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହରେ
ମୁଖ୍ୟ ଅତିଥି କଂଗ୍ରେସ ସଭାପତି ଶ୍ରୀ ହେମାନନ୍ଦ ବିଶ୍ୱାଳ, ମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକ ଓ ଲୋକସମ୍ପର୍କ
ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ । ୨୨-୧




ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ରାଜ୍ୟସ୍ତରୀୟ ବକ୍ସି ଜଗବନ୍ଧୁଙ୍କ ଶ୍ରାଦ୍ଧ ବାର୍ଷିକୀ ଉତ୍ସବରେ ଅବକାରୀ
ମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହଙ୍କ ସହିତ ଅନ୍ୟ ମାନ୍ୟଗଣ୍ୟ
ବ୍ୟକ୍ତିମାନେ । ୨୪-୧



ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଉପସ୍ଥିତିରେ ଆର.ଏସ୍.ଏଲ୍. ଓ କମ୍ପାକ୍ ମଧ୍ୟରେ ଏକ ବୁଝାମଣା ପତ୍ର ସ୍ୱାକ୍ଷରିତ । ୧୮-୧



ହୁଡକୋର ଅଧ୍ୟକ୍ଷ ଶ୍ରୀ ଭି. ସୁରେଶ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରି ରାଜ୍ୟରେ ଗୃହନିର୍ମାଣ କାର୍ଯ୍ୟକ୍ରମ ପାଇଁ ହୁଡକୋର ସହାୟତା ସମ୍ପର୍କରେ ଆଲୋଚନା କରୁଛନ୍ତି । ୩୦-୧୨



ବେଗୁନିଆ ବ୍ଲକ୍ ଅନ୍ତର୍ଗତ ବାଘିଠା-ଜମ୍ପୁର ରାସ୍ତାରେ ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ନିର୍ମିତ ସେତୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ୬-୧



ଖୋର୍ଦ୍ଧା ଜିଲ୍ଲା ବେଗୁନିଆ ବ୍ଲକର ସାମନ୍ତରାପୁର ଗ୍ରାମରେ ଜାତୀୟ ଜଳ ନିଷ୍କାସନ ପ୍ରକଳ୍ପର ଉତ୍ସପଟା ଚଳ ଅମଳ ପ୍ରକଳ୍ପ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରି ବୁଲି ଦେଖୁଛନ୍ତି । ୬-୧



ରାଜ୍ୟ ସମବାୟ ବ୍ୟାଙ୍କ୍ ସମ୍ମିଳନୀ ଗୃହରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ହିତାଧିକାରୀମାନଙ୍କୁ
କିଷାନ୍ କ୍ରେଡିଟ୍ କାର୍ଡ ବଣ୍ଟନ କରୁଛନ୍ତି । ୨୦-୧



ସଚିବାଳୟ ସମ୍ମିଳନୀ କକ୍ଷରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭାଷଣ ଦେଉଛନ୍ତି । ୨-୧



ସୈନିକ ସ୍କୁଲ୍ ର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କୃତୀ ଛାତ୍ରମାନଙ୍କୁ ପୁରସ୍କୃତ କରୁଛନ୍ତି । ୧୪-୧



ବରମୁଣ୍ଡାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବାକେଶ୍ୱରୀ ବିଦ୍ୟାପୀଠର ନବନିର୍ମିତ ଗୃହ ଉଦ୍ଘାଟନ କରୁଛନ୍ତି । ସାଂସଦ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଓ ବିଧାନସଭା ବାଚସ୍ପତି ଶ୍ରୀ ଚିନ୍ତାମଣି ଧ୍ୟାନ ସାମନ୍ତରାୟ ଉପସ୍ଥିତ ଅଛନ୍ତି । ୧୯-୧



ଶହୀଦ୍ ଦିବସ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ବିଧାନସଭା ପରିସର ମଧ୍ୟରେ ଥିବା ଜାତିର ପିତା ମହାତ୍ମାଗାନ୍ଧିଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଅର୍ପଣ କରୁଛନ୍ତି । 30/1



ସଇଦ୍ ସେମିନାରୀ ପ୍ରାଙ୍ଗଣରେ ଅନୁଷ୍ଠିତ ଇଦ୍-ମିଳନ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯୋଗଦାନ କରି ଭାଷଣ ଦେଉଛନ୍ତି । ୨୪-୧

VOL. LV No. 7 UTKAL PRASANGA Regd. No. O—BN—05/90
Licence No. C.R N.P. 5—Licensed to post without Pre-payment



ଭୁବନେଶ୍ୱର ମହାତ୍ମା ଗାନ୍ଧୀ ମାର୍ଗଠାରେ ଆୟୋଜିତ ରାଜ୍ୟସ୍ତରୀୟ ୪୦ତମ ଗଣତନ୍ତ୍ର ଦିବସ ପରେଡରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଭିବାଦନ ଗ୍ରହଣ କରୁଛନ୍ତି । ୨୬-୧



ସୂଚନା ଭବନଠାରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ପୋଲିସ୍ ପଦକ ପ୍ରଦାନ କରୁଛନ୍ତି । ୨୬-୧

